# ବିଦ୍ୟାଳୟ ଏକାଙ୍କିକା

ଶ୍ରୀ ନରସିଂହ ମିଶ୍ର
ଶିକ୍ଷା ନିର୍ଦ୍ଦେଶାଳୟ, ଓଡ଼ିଶା

ବିଦ୍ୟାପୁରୀ
ବାଲୁବଜାର, କଟକ

ପ୍ରଥମ ପ୍ରକାଶ
ଡିସେମ୍ବର, ୧୯୮୦

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ-୭୫୩୦୦୨

ମୁଦ୍ରଣ
ଶ୍ରୀ ଦିବାକର ମିଶ୍ର
ଗୋସ୍ୱାମୀ ପ୍ରେସ
ଆଲାମଚାନ୍ଦ ବଜାର, କଟକ-୭୫୩୦୦୨

ମୂଲ୍ୟ—ଟ ୬·୦୦

# ପଦେ

ବିଦ୍ୟାଳୟ ପ୍ରତ୍ୟେକ ଦେଶର ଦେବଭୂମି । ଏହାର ପବିତ୍ର ପରିବେଶ ଉପରେ ଜାତୀୟ ଜୀବନର ପରିପୁଷ୍ଟି ନିର୍ଭର କରେ । ବିଦ୍ୟାଳୟର ସୁସ୍ଥ ପରମ୍ପରା, ନୈତିକ ମୂଲ୍ୟବୋଧ ଓ ସାଂସ୍କୃତିକ ଚେତନାଧାରା ଜାତୀୟ ଜୀବନ ପ୍ରବାହକୁ ପ୍ରଭାବିତ କରିଥାଏ । ଯେଉଁ ଦେଶର ବିଦ୍ୟାଳୟ ଶିଶୁର ସାମଗ୍ରିକ ବ୍ୟକ୍ତିତ୍ୱର ପୁଷ୍କଳ ବିକାଶ ଦିଗରେ ସାହାଯ୍ୟ କରି ନ ପାରେ, ସେ ଦେଶର ନୈତିକ ଜୀବନ ସଙ୍କଟାପନ୍ନ ହୋଇଥାଏ ।

ଆମ ଦେଶର ବହୁ ବିଦ୍ୟାଳୟ ଏବେ ଦୁର୍ଗତିର ଗୋଟିଏ ଗୋଟିଏ ଦୁର୍ଗରେ ପରିଣତ ହୋଇଛି । ସେଠାରେ କେତେକ ଶିକ୍ଷାବିତ୍‌ର କଳ୍ପନା-ବିଳାସ, କର୍ମକର୍ତ୍ତାମାନଙ୍କର ବିଚାର-ବିଭ୍ରାଟ, ଶିକ୍ଷାଦାତାର ନିଷ୍କ୍ରିୟତା ତଥା ଅଭିଭାବକମାନଙ୍କର ବିମୁଖତା ଗୋଟିଏ ଗୋଟିଏ ମାରଣାସ୍ତ୍ର ପରି ସଜ୍ଜିତ ହୋଇ ରହିଛି । ଗୃହଗୃହୀମାନେ ବିସ୍ଫୋରକ ସ୍ତୂପ ଉପରେ ବର୍ତ୍ତମାନ କ୍ରୀଡ଼ାରତ । ଦେଶର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଭବ୍ୟଭାବନା ସୃଷ୍ଟି କରିବା ପାଇଁ ଓ ନୈତିକ ମୂଲ୍ୟବୋଧର ବିକାଶ ନିମିତ୍ତ ଏଥିରେ ଚେଷ୍ଟା କରାଯାଇଛି । ଏହା ଆଦୃତ ହେଲେ ଶ୍ରମ ସାର୍ଥକ ହେବ ।

ଶିବରାତ୍ରୀ — ବିନୀତ

୧୯୮୧ — ଲେଖକ

# ସୂଚୀପତ୍ର


| ବିଷୟ | ପୃଷ୍ଠା |
|---|---|
| ୧। ଅପରାଧର ବିସ୍ତର | ୧ |
| ୨। ନିକଟର ଅଭିଷେକ | ୨୯ |
| ୩। ସାଧୁ | ୪୭ |
| ୪। ଚରମ ଭିକ୍ଷା | ୫୮ |
| ୫। ସତ୍ୟର ଜୟ | ୬୭ |

## ପାତ୍ରସୂଚୀ

ପ୍ରବୋଧ—ମାନସର ପିତ.

ସଂଧ୍ୟା—ମାନସର ମା’

ମାନସ—ପ୍ରବୋଧ ବାବୁଙ୍କ ପୁଅ

ମାନିନୀ—ମାନସର ସଙ୍ଗିନୀ

ପ୍ରଧାନ ଶିକ୍ଷକ

ଚୈତନ୍ୟ ବାବୁ—ଶିକ୍ଷକ

ଛାତ୍ରଛାତ୍ରୀଗଣ

# ଅପରାଧର ଝଙ୍କାର

## ପ୍ରଥମ ଦୃଶ୍ୟ

[ ପର୍ଦ୍ଦା ଉଠିଲା । ମଂଚବୁକୁରେ ପ୍ରବେଶ କଲେ ମାନସ ଆଉ ମାନିନୀ । ଅସମାପ୍ତ କଥାର ଏକ ଝରଣ...... ]

ମାନସ—ସତରେ ମାନିନୀ, ତୋ ନାଁଟି ଭାରି ଚମତ୍କାର ! ଆଜିର ଚମତ୍କାର ତୋ ନାଁ ସହିତ ତୋ ପ୍ରକୃତି । ଝୁଲ୍‌କୁଲ୍ ସମାନ, ପିନ୍‌ଟାଏ ଯିବାକୁ ବି ବାଟ ନାହିଁ ।

ମାନିନୀ—ଆଉ ତୋ ନାଁରେ କଣ ହାତୀଟାଏ ଯିବାକୁ ବାଟ ଅଛି ?

ମାନସ—ବୋକୀ, ଆଦୌ ବୁଝିପାରିଲୁନି । ମୋ ନାଁଟା ପରା ମୋ ପ୍ରକୃତିର ଠିକ୍ ଓଲଟା ।

ମାନିନୀ—ଓଲଟା !! କିଏ କହିଲା ? ମା...ନ...ସ...ବାଃ ବାଃ କି ବଢ଼ିଆ ନାଁ ! ହିମାଳୟର ପବିତ୍ର ମାନସରୋବର ।

ମାନସ—ଓଃ, ସେଇଥିପାଇଁ ସେଇ ପବିତ୍ର ମାନସରୋବରରୁ ତା ପିଠିରେ ମାଡ଼ଗାଳିର ପବିତ୍ର ଗଙ୍ଗା ସବୁବେଳେ ବହୁଚି । ବାପାଙ୍କ ରାଗର ବରଫମୁଣ୍ଡା ତରଳିଲେ ଆମ ପିଠିରେ ଗଙ୍ଗାଟା ବହିଲା । ବର୍ଷସାରା ବହୁଚିରେ ମାଣି...ସୁନାବ୍ୟା ! ଆଜି ଆମ ନାଁର ମାନସରୋବରରେ ନିନ୍ଦା, ଅପମାନ, ପୀଡ଼ନର ପକ୍ଷୀମାନେ କଲକାକଳିରେ ସର୍ବଦା ବ୍ୟସ୍ତ ।

ମାନିନୀ—ହଁ, ଥାଉ ଥାଉ, କବିତ୍ୱ ସେତିକି ଥାଉ । ସେତିକି ଥାଉ ।

ମାନସ—ଏତେ ଅବଗୃର ଉତରେ ଏ କବଚ୍ଛ, ଆଜ କେତେଦନ ଗୃଲବରେ ମାମା···ସେ ଆପେ ବନ୍ଦ ହୋଇଯିବ ।

ମାନମା—ମାନେ ?

ମାନସ—ସବୁକଥାର ମାନେ ଖୋଜବସିଲେ ଅର୍ଥ କିଛୁ ମିଳେନା, ଗୁଡ଼ ସେସବୁ କଥା । ମୋର ସେଇ ଭଜନଟା ତୋ କଣ୍ଠରେ ସ୍ୱର ଭଲ ଶୁଣାଯାଏ । ଟିକିଏ ଗାଆରେ ମାମା···ଗାଆନା !

ମାନମା—ମୋତେ ବ ସବୁଠୁ ଭଲଲଗେ ତୋ ଭଜନଟା, ଭର ମନଛୁଆଁ ।

ଭଜନ

ନସ୍ୱଣାର ମରୁପଥେ ପଥିକ ମୁଁ ଘୁର ବୁଲେ,
ଝୁର ଝୁର ଦନସ୍ୱଣ ଏ ନୟନ ଅଶ୍ରୁ ଜଳେ ।
ତୁମେ ତ ଅନ୍ତରଯାମୀ ଅନ୍ତର ବେଦନା ମମ
ବୁଝିକି ପାରୁନ ସଖା ଏତେ ମାନ ଅଭିମାନ
କା ଆଗେ କହିବ ତେବେ ତୁମେ ହେ ନସ୍ଥୁର ଯେବେ
ଏଇକି ବଚାର ପ୍ରଭୁ ଭସିଗଲ ଭବଜଳେ
ନସ୍ୱଣାର ମରୁପଥେ ପଥିକ ମୁଁ··· ।।

ତୁମେ ପର୍‌ ଧୀନବନ୍ଧୁ ଶୁଣିଲନ ମୋ ଗୁହାସ୍ୱ
ଡେରିଲନ କାନ, ମୁହିଁ ଅମାତର ଦାସ ବୋଲ
ସ୍ୱଗ, ଦ୍ୱେଷ, ଅହଙ୍କାର, ପସ୍ୱଣେ ଭରିଛ ଯେତେ
ତମ ଦାନ ତମେ ନଅ, ତସ୍ୱ ମୋ ଲଗାଅ କୂଳେ
ନସ୍ୱଣାର ମରୁପଥେ····· ।।।

ମାନସ—ଚମତ୍କାର···ଚମତ୍କାର । (ମଂଚ ଅନ୍ଧକାର)

## ଦ୍ୱିତୀୟ ଦୃଶ୍ୟ

[ଶ୍ରେଣୀ ପ୍ରକୋଷ୍ଠ, ଛାତ୍ରଛାତ୍ରୀମାନେ ଅଧ୍ୟୟନରତ, ଶିକ୍ଷକଙ୍କର ପ୍ରବେଶ । ଛାତ୍ରମାନଙ୍କର ଅଭିବାଦନ]

ଶିକ୍ଷକ—ଆଚ୍ଛା, ବସ ପିଲାଏ । ଆଜ କେଉଁ ବିଷୟ ପଢ଼ାଯିବ ?

ପ୍ରଥମ ଛାତ୍ର—ସାର୍, ମଧୁସୂଦନ ରାଓଙ୍କ "ଭ୍ରୂ ପଣ ବୋଲାଉ ଉତ୍କଳ ସନ୍ତାନ ।"

ଶିକ୍ଷକ—ଠିକ୍ କହିଲ ।

ମାନସ—ସେ ଭୁଲ କହିଲା ସାର୍ । ଲେଖକ ହେଉଛନ୍ତି ମଧୁସୂଦନ ଦାସ ।

ଶିକ୍ଷକ—ସେ ଠିକ୍ କହୁଛି । ବାରିଷ୍ଟର ମଧୁସୂଦନଙ୍କର ସମୟ ନଥିଲା କବିତା ଲେଖିବାକୁ । ସେ ତ ଧନବନ୍ତ ଓକିଲାତିରେ ମାତିଥିଲେ । ଏ ଲେଖାଟି ମଧୁସୂଦନ ରାଓଙ୍କର ।

ମାନସ—ବହିରେ ଲେଖାଅଛି ।

ଶିକ୍ଷକ—ନନ୍‌ସେନସ୍, ବହିଲେଖା ବେଦର ଗାର ନୁହେଁ । ତାର ସଂଶୋଧନ ଦରକାର ।

ମାନସ—ତାହେଲେ ବୋର୍ଡ଼କୁ ଲେଖନ୍ତୁ । ବୋର୍ଡ଼ ଏଡ଼େ ଭୁଲଟାଏ କଲା କିମିତି ?

ଶିକ୍ଷକ—କେବଳ ବୋର୍ଡ଼ କାହିଁକି, ସବୁ ଶିକ୍ଷକ ଏ ଭୁଲ କରନ୍ତି । ମଧୁସୂଦନ ଦାସ ତ ଅତ୍ୟନ୍ତ ଶକ୍ତିଶାଳୀ ବାରିଷ୍ଟର ଥିଲେ, ତାଙ୍କପାଇଁ କିଏ କଣ କେଉଁଠେ ଲେଖିଥିବ, ତେବେ "ଭ୍ରୂ ପଣ ବୋଲାଉ ଉତ୍କଳ ସନ୍ତାନ" ମଧୁସୂଦନ ରାଓଙ୍କ ଲେଖା ।

ମାନସ—ଆମେ ଏ କଥାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୋହୁଁ ସାର୍ ! ଆପଣ ଅନ୍ୟ କାହାକୁ କହିବେନ, ଲୋକେ ହସିବେ ।

ଶିକ୍ଷକ—ତୁ ଘର ପଣ୍ଡିତଟା ! ଆରେ, ମୁଁ ସ୍କୁଲ୍‌ର ଉପରେ ଗବେଷଣା କରୁଛି । ଓଡ଼ିଆ ସାହିତ୍ୟରେ ଜଣେ ମଧୁସୂଦନ, ଦୁଇଜଣ ନୂହନ୍ତି । ଆଗେ ତ ପୁଣି କୁହାଯାଇଥିଲା ପୃଥିବୀ ସ୍ଥିର, ସୂର୍ଯ୍ୟ ଘୂରୁଛି । ଓଲଟା କଥା କହିଲେ ସେତେବେଳେ ବି ଲୋକେ ହସୁଥିଲେ, କିନ୍ତୁ ଆଜି ତା ସତ୍ୟରେ ପରିଣତ ହୋଇନି କି ନାହିଁ ? ଏବେ ଆମେ କହୁଚେ ସୂର୍ଯ୍ୟ ସ୍ଥିର, ପୃଥିବୀ ଘୂରୁଛି ।

ଜଣେ ଛାତ୍ର—ସାର୍, ତା' ହେଲେ ବହି ସଂଶୋଧନ ହେଉ, ଆମେ ଏକଥା ଗ୍ରହଣ କରିବୁ ।

ମାନସ—ଏ କଥା ଆମେ କାହାକୁ କହିଲେ ପ୍ରଳାପ କରୁଛି ବୋଲି କହିବେ ।

ଶିକ୍ଷକ—ହଁ, ବେକୁବ୍ ମୁଁ ପ୍ରଳାପ କରୁଛି । ( ମାନସ ପିଠିରେ ମାଡ଼ ) ଯା…ଯା କହୁଛି । କ୍ଲାସରୁ ବାହାରିଯା, ନ ହେଲେ ଘଣ୍ଟିଆ ଦେଇ ବାହାର କରିଦେବି ।

[ ମାନସ ଶ୍ରେଣୀ ଛାଡ଼ନ୍ତି ଓ ତା' ପରେ ପରେ ଅନ୍ୟ ପିଲାଏ ମଧ୍ୟ ବାହାରିଗଲେ ]

ଶିକ୍ଷକ—ମଣିଷ କ'ଣ କରିବ । ସକ୍ରେଟିସ୍, ଗାଲିଲିଓ, ନିଉଟନ୍ ସମସ୍ତେ ତ ଏଇପରି ଅବସ୍ଥା ଭୋଗିଛନ୍ତି । କଲେଜରେ ପାଠ ପଢ଼ାଇବା ଲୋକ ସ୍କୁଲରେ ପଢ଼ାଇଲେ ଏଇ ଅବସ୍ଥା । ଏ ମାଙ୍କଡ଼ ଦଳକୁ ବୁଝାଇ ହେବନି । ତେବେ ସେ ଟୋକାକୁ ସାବାଡ଼ କରି ନ ଦେଲେ ସ୍କୁଲରେ ଶାନ୍ତି ରହିବନି । (ପ୍ରସ୍ଥାନ)

[ମଞ୍ଚର ବଡ଼ପଖାଚ ପାର୍ଶ୍ବରୁ ଆସିଲେ ପଣ୍ଡିତେ ଓ ତାଙ୍କ ପଛେ ପଛେ ଅନ୍ୟ ପିଲାମାନେ]

ପଣ୍ଡିତେ—ମୁଁ ମନାକରୁଛ, ବସୁଧା ବ ସହ୍ବ ନପାର କହ୍ଁ ଲେଉଟାଏ, ଭୂମିକମ୍ପ ହୁଏ । ତାହା କେବଳ କେତେ ସେକେଣ୍ଡ ପାଇଁ । ତମେ ପିଲାଏ ତ ସହ୍ବବା ଗୁଣରେ ବସୁଧାଠୁ ବଡ଼ । ମାଷ୍ଟ୍ରେ କ'ଣ ଟିକଏ ଅନ୍ୟାୟ କରଦେଲେ ବୋଲ ତମେ ଘଣ୍ଟା ଘଣ୍ଟା ଧର ଭୂମିକମ୍ପ କରୁଥିବ ! ସୃଷ୍ଟି ରହିବତି ? କରେ ସମସ୍ତେ କଣ କ୍ଲାସ ଛାଡ଼ ପଳେଇଲ !

ଜଣେ ଛାତ୍ର—ସାର୍, ଏ ସ୍କୁଲରେ ନ୍ୟାୟ ନାହିଁ । ଏ ସ୍କୁଲ ଛାଡ଼ ପଳେଇବାକୁ ଇଚ୍ଛା ହେଲାଣି ।

ପଣ୍ଡିତେ—ଆମେ ଚାହେଁଲେ କୁଆଡ଼େ ପଳେଇବୁ ? ଛାତ୍ର ଯୁଆଡ଼େ ଶିକ୍ଷକ ସେଇଆଡ଼େ । ମା ପଛେ ପଛେ ଛୁଆ, ଛୁଆ ପଛେ ପଛେ ମା, ଯୋଉଠିକି ଗଲେ ପୁଣି ଏଇ ପରିବେଶ । କ୍ଲାସଟା ତମର କ ଦୋଷ କଲା ?

ଛାତ୍ର—ସାର୍, ମାନସ ଆଜ ସତ କହିବାକୁ ଯାଇ ଯେତେ ମାଡ଼ ଖାଇଲାନା ଆପଣ ବ ପାଖରେ ଥିଲେ ସହିପାର ନଥାନ୍ତେ ।

ପଣ୍ଡିତେ—ସତ କହିଲେ ମଣିଷ ଦଣ୍ଡ ପାଏ, ଦଣ୍ଡ ପାଇଲେ ସେ ବଡ଼ ହୁଏ । ମାନସ ମାଡ଼ ଖାଇଲା ବୋଲ ବଡ଼ ହୋଇ-ଗଲା···ତମ ସମସ୍ତଙ୍କର ସହାନୁଭୂତି ତାପାଇଁ । ଆଚ୍ଛା ମୁଁ ତ ଜଣେ ଶିକ୍ଷକ, ଆମ ଭୁଲପାଇଁ ମୁଁ ତମଠୁ କ୍ଷମା ମାଗିନେଉଛୁ । ତମେ ତ ସବୁ ଆମର ପିଲା···ଆମକୁ କଣ କ୍ଷମା ଦେବନ ? ଘରେ ବାହାରେ ତମେ ଯେତେ ମାଡ଼ଗାଳ

ଖାଅ ସବୁ କ'ଣ ନ୍ୟାୟରେ ? ଅନ୍ୟାୟରେ ବି ବହୁତ ମାନ ଅପମାନ ସହିବାକୁ ପଡ଼ିଥାଏ । ତମେ କଣ ତମର ବାପା, ମା, ଗୁରୁଜନଙ୍କୁ ଏଥିପାଇଁ ମନେମନେ କ୍ଷମା ଦିଅନ ? ତମର ହୃଦୟ ପ୍ରକୃତରେ ବଡ଼ ଉଦାର, ସେ ସବୁ ଭୁଲିଯାଅ ।

ପିଲାଏ—ସାର୍‌, ଆପଣ ଆମକୁ କ୍ଷମା ଦିଅନ୍ତୁ । ଆମେ ଆଉ ଅବାଧ ହେବୁନି । ତେବେ ସେ ସାର୍‌ଙ୍କୁ ବୁଝାନ୍ତୁ—ସେ ପ୍ରସ୍ତୁତ ହୋଇ ଆସନ୍ତୁ ଆମକୁ ପଢ଼ାଇବାକୁ । ଭୁଲ କଥା କହି ଆମମାନଙ୍କୁ ନଷ୍ଟ କରନ୍ତୁନି । ହେଃମାଃ ବି ତଦ୍ରୂପ । ସବୁବେଳେ ସାର୍‌ଙ୍କ ପକ୍ଷ ।

ପଣ୍ଡିତେ—ହଁ, ଦୁର୍ବଳ ପକ୍ଷକୁ ଟିକିଏ ସମର୍ଥନ କରଛନ୍ତି । ତମକୁ ହୃଦୟଭରା ସ୍ନେହ ଦେଉଛନ୍ତି । ତମେ କଣ ସତରେ ମୋତେ ଭଲପାଅ ରେ ପିଲେ ?

ପିଲାଏ—ନିଶ୍ଚୟ···ତାର ପରୀକ୍ଷା ଆମେ ଦେଇସାରିଛୁ ସାର୍‌ । କଥା ମାନି ଶ୍ରେଣୀକୁ ଆସିଛୁ ।

ପଣ୍ଡିତେ—ଆଉ ଗୋଟାଏ ପରୀକ୍ଷା ଦରକାର ।

ପିଲାଏ—ସାର୍‌, କି ପରୀକ୍ଷା ?

ପଣ୍ଡିତେ—'ବର'ଟିଏ ମାଗିବି ତମେ ଦେଇପାରିବ ? ତମେ ମୋର ଗୁରୁଣ୍ଡୁ ଗୋପାଳ ଠାକୁର ।

ପିଲାଏ—ସାର୍‌, ନିଶ୍ଚୟ ଦେବୁ । କହନ୍ତୁ ।

ପଣ୍ଡିତେ—ସେଦିନ ମୁଁ ତମକୁ ଯୋଉ ଅନୁରୋଧ କରିଥିଲି, ସେଇଟାହିଁ ମୋର ମାଗଣ । କୁହ, କେତେ ଜଣ ମୋର ଅଭିଳାଷ ପୂରଣ କରିବ ? ମୁଁ ଗୁରୁଦକ୍ଷିଣା ଆଜି ଚାହେଁ ।

ପିଲାଏ—ନୀରବ...(ଗୁହିଁରହିଲେ ପଣ୍ଡିତଙ୍କ ମୁହଁକୁ)

ପଣ୍ଡିତେ—କହିଥିଲି, "ପ୍ରତିଦିନ ସକାଳୁ ଉଠି ପ୍ରଥମେ ପିତା ମାତାଙ୍କୁ ପ୍ରଣାମ କରିବ।" କେତେ ଜଣ ମୋ କଥା ମାନିଚ ? ମୋର ବିଶ୍ୱାସ, ତମେ ମନଖୋଲା କଥା নିଶ୍ଚୟ କହିବ— କାରଣ ମୋତେ ଭଲପାଅ । ହାତ ଟେକ ।

ପିଲାଏ—(ପ୍ରତ୍ୟେକେ ପ୍ରତ୍ୟେକଙ୍କ ମୁହଁକୁ ଗୁହିଁଲେ, କେବଳ ଜଣେ ହାତ ଟେକିଲା)

ପଣ୍ଡିତେ—ଓଃ, ଦେବେନ୍ଦ୍ର...! ଖୁବ୍ ଖୁସିହେଲି, ତମେ ଏ ଶ୍ରେଣୀର ସୂର୍ଯ୍ୟ, ତମ ଆଲୋକରେ ଶ୍ରେଣୀସାରା ଆଲୋକିତ ହେଉ । ତମ ଆଦର୍ଶ ସମସ୍ତେ ଗ୍ରହଣ କରନ୍ତୁ । ତେବେ ପିଲାଏ, ମୋର ଆଉ ଗୋଟିଏ ଅନୁରୋଧ ରଖିବ ତ !

ପିଲାଏ—ସାର୍ କହନ୍ତୁ ।

ପଣ୍ଡିତେ—ଦେବେନ୍ଦ୍ରଙ୍କ ପରି ତମେ ସମସ୍ତେ ବାପା ମା'ଙ୍କୁ ତ ନିଶ୍ଚୟ ପ୍ରଣାମ କରିବ ପ୍ରତିଦିନ ଶଯ୍ୟାତ୍ୟାଗ କରିବା ପରେ, ତେବେ ଗୁରୁଜନମାନଙ୍କର କଥା ନ ଧରିବାକୁ ମୁଁ ଅନୁରୋଧ କରୁଛି । ପ୍ରତିବାଦ ଅନ୍ୟାୟ ପାଇଁ କରାଯାଇ ପାରେ । ସେ ପ୍ରତିବାଦ ହେଉ ନୀରବ ପ୍ରତିବାଦ, ତାହା କମ୍ ପ୍ରଭାବ ପକାଇବ ନାହିଁରେ ପିଲେ ! ଶ୍ରେଷ୍ଠପିଲା ମନରେ କଷ୍ଟ ହେଲେ ସେ ତା ଋହାଣିରେ ପ୍ରତିବାଦ ତୋଳେ । ମୁଖମଣ୍ଡଳରେ ତା ମନର ଅସନ୍ତୋଷ ଖେଳିଯାଏ । ବଡ଼ ମଣିଷ ତତ୍‌କ୍ଷଣାତ୍ ତାହା ବୁଝିପାରନ୍ତି । ନିଜକୁ ବଦଳାଇ ଦିଅନ୍ତି । ମୋ କଥା ମାନିବ ?

ପିଲାଏ—ମାନବକୁ ସାର୍...ନଷ୍ଟପ୍ସ ମାନବକୁ । ଆମ ଭୁଲପାଇଁ କ୍ଷମା ଦଅନ୍ତୁ ସାର୍ !

ପଣ୍ଡିତେ—ପିଲାମାନଙ୍କର ମନକଥାକୁ ପଢ଼ିପାରିବାର ଶକ୍ତି ପ୍ରାୟ ସବୁ ଶିକ୍ଷକଙ୍କର ଅଛି । ତମେ ଭଲ ମଣିଷ ହୁଅ ।

[ ପର୍ଦ୍ଦା ]

## ତୃତୀୟ ଦୃଶ୍ୟ

[ କହି କହି ପ୍ରବେଶ କଲେ ପ୍ରବୋଧ ଓ ସଂଧ୍ୟା, ମାନସର ବାପା ଓ ବୋଉ ]

ପ୍ରବୋଧ—ବୁଝିଲ, ତମରିପାଇଁ ସେ ପିଲାଟା ଧ୍ୱଂସ ହୋଇଯିବ । ଏ ଘର ବୁଡ଼ିଯିବ । ଯେତେ କହିଲି ତାକୁ ମୁହଁ ଦଅନି, ଟିକିଏ ଶାସନ କରି, ସେ କୋଉଠେ କଣ କରୁଛି ମୋତେ ଟିକିଏ କୁହ, ହେଲା ନାହିଁ...ହେଲା ନାହିଁ ।

ସଂଧ୍ୟା—କଣ ହେଲା, ମୋପାଇଁ ଘର ଧ୍ୱଂସ ହୋଇଯିବ । ପିଲାଟାକୁ ମୁଁ ନଷ୍ଟ କରିଦେଲି ? ତୁମେ କଣ୍ଟୁ କରନି ? କୁହ, ମୁଁ କୋଉଥିରେ ଅବହେଳା କରିଛି ?

ପ୍ରବୋଧ—ଅବହେଳା କରନି ? କହିଲ, ତାକୁ କେବେ ଶାସନ କରିଛ ? ଭଲକୁ ମନ୍ଦକୁ କେତେବେଳେ ପଦେ ଅଧେ କହିଛ ?

ସଂଧ୍ୟା—କଣ ହେଲା, ମା'ଠ ଶାସନ କରିବେ, ବାପଗୁଡ଼ାକ ଆଉ କଣ କରିବେ, କଣ ତୁଆକୁ ତାଡ଼ାନାଡ଼ କରିବେ ? ଆରେ...।

ପ୍ରବୋଧ—ଭଗବାନ ଭୁଲ୍ କରିଛନ୍ତି ସନ୍ଧ୍ୟା । ତମକୁ ବନ୍ଧ୍ୟା କରିଥିଲେ ଘରି ଭଲ ହୋଇଥାନ୍ତା । କ୍ଷାନ୍ତ କର ହେ କୃଷ୍ଣ, କ୍ଷାନ୍ତ କର ।

ସନ୍ଧ୍ୟା—କୃଷ୍ଣ କ'ଣ କ୍ଷାନ୍ତ କରିବେ ! ମୁଁ ବନ୍ଧ୍ୟା ହୋଇଥିଲେ ତମ କୂଳରେ ପାଣି ଟୋପାଏ ବି ଦେବାକୁ କେହି ନଥାନ୍ତେ । ଭଗବାନ ତୁମକୁ କି ବୁଦ୍ଧି ଦେଇଛନ୍ତି ମୁଁ ଭାବିପାରୁନି । ଗୋଟାଏ ଛୁଆରେ ତ ପାଗଳ, ପାଞ୍ଚଟା ଛଅଟା ହୋଇଥିଲେ କଣ ହୋଇଥାନ୍ତା ?

ପ୍ରବୋଧ—ଯୋଉ ଗୋଟିକ ଦେଇଛ ସେଇଟି ସନ୍ଧ୍ୟା ଆକାଶର ତାରକା ନୁହେଁ···ଧୂମକେତୁ ଧୂ···ମ···କେ···ତୁ !! ପ୍ରଳୟ ନକଟ···ନକଟ···

ସନ୍ଧ୍ୟା—କହୁନ ସେ କ'ଣ କଲା ?

ପ୍ରବୋଧ—କଅ, ତମ କୀର୍ତ୍ତିଚନ୍ଦ୍ରଙ୍କର କୀର୍ତ୍ତି । (ଚିଠି ବଢ଼ାଇ-ଦେବା )

ସନ୍ଧ୍ୟା—ତମେ ପଢ଼ୁନା, ମତେ କ'ଣ ସେ ଇଂରେଜିଗୁଡ଼ାକ ଆସେ ?

ପ୍ରବୋଧ—ହଁ, ଓଡ଼ିଆରେ ତ ଶଣାଦେଇ କାନ୍ଦଯାଏ ଦଉଡ଼, ବାକି ରହିଗଲା ଇଂରେଜିଟା । ହେଡ଼ମାଷ୍ଟ୍ରେ ଲେଖିଛନ୍ତି ତା ନାଁ କାଟିଦେବାକୁ ।

ସନ୍ଧ୍ୟା—ଏଁ, ନାଁ କାଟିଦେବେ ? ହେଲେ ହଅନ୍ତୁ, ତମେ ଆମର ଚୁପ୍‌ଚାପ୍ ବସ । ଦେଖ କୋଉପାଣି କୁଆଡ଼େ ଯାଉଛି ।

ପ୍ରବୋଧ—ଆହା ! କି ସୁନ୍ଦର ଉପଦେଶ । "ତୁନ୍‌ତାନ୍ ବସିଯାଅ ।" ବୁଝିଲ, ତମର କୀର୍ତ୍ତିଚନ୍ଦ୍ରେ ଜଣେ ସାର୍‌ଙ୍କୁ ବାଡ଼େଇବାକୁ

ଧମକ ଦେଇଛନ୍ତି । ହେ:ମା:ଙ୍କୁ ମଧ୍ୟ ଅପମାନ ଦେଇଛନ୍ତି । ବେନାମୀ ଉପରେ ବେନାମୀ ଲେଖା ଗ୍ଲୁଲିଛି । ଏଇ ଦେଖିଲ... ବାବୁଙ୍କ ଖୋଦ୍ ହାତଲେଖା କି ନୁହେଁ ।

ସୁଧା—ମିଛ...ମିଛ...ଏସବୁ ଡାହାମିଛ । ମୋ ପୁଅକୁ ମୁଁ ଭଲ ଭାବରେ ଚିହ୍ନିଛି । ସେ ତମଶପର ସ୍ପଷ୍ଟ ମୁହେଁ ମୁହେଁ କହିଦିଏ । ଏଇଟା ତାର ଏକମାତ୍ର ଦୋଷ । ହଇହୋ...ତମେ ପଣ୍ଡ ବାପ, ତା ହସ୍ତାକ୍ଷର ଏଯାଏ ଚିହ୍ନିଲନି ! ଏସବୁ ତାକୁ ବାହାର କରିଦେବାକୁ ସେ ହେ: ମା:ଟାର ଷଡ଼ଯନ୍ତ୍ର । ତା ବଡିଗଡ଼ିବାର କାରଣଟା ମୁଁ ଜାଣିଛି ।

ପ୍ରବୋଧ—ତାହେଲେ ମୋତେ ଏଯାଏ କିଛି କହିନ !

ସୁଧା—ତମକୁ କଣ ସବୁକଥା କହିବାକୁ ମୁଁ ବାଧ୍ୟ । ମୋ ପୁଅର ଭଲ ମନ୍ଦ କଥା କିଛି ପେଟରେ ରଖିବନି । ଯାହା ତାଠୁ ଶୁଣିବ ସବୁ ତ ତମ ଆଗରେ ବାନ୍ତି କରି ପକେଇବ, ତାହେଲେ ମୋ ମା' ପଣିଆ ରହିଲା କୋଉଠେ । ସେ ବା ତା ପେଟ ଭିତରର କଥା ମୋତେ କହିବ କାହିଁକି ?

ପ୍ରବୋଧ—ଓଃ...ଏମନ୍ତ ! ମା' ପଣିଆର ପ୍ରେଷ୍ଟିଜ୍ ରହିବନି ! ଏବେ କଥାଟାକୁ ସମ୍ଭାଳୁନ । ଏତେବେଳକୁ ବାପ କାହିଁକି ବୁଝିବ ?

ସୁଧା—ମୁଁ ତ ସେଇଥି ପାଇଁ କହୁଚି ଚୁପହୋଇ ବସ । ଅଡୁଆ ଛୁଣ୍ଡିବନି, ରହିବ ? ମୋ ପୁଅ ଯାହା କରଚି ସବୁ ଠିକ୍ କରଚି ।

ପ୍ରବୋଧ—ତମ ମୁଣ୍ଡଗଣ୍ଡି କରଚି । ସ୍କୁଲରୁ ତ ତଡ଼ା ଖାଇବ ଆଉ କେତା ସାଜିବ କୋଉଠେ ?

ସୁଧା—ସେ ସ୍କୁଲରେ ପାଠ ନ ପଢ଼ିବା ଭଲ । ପିଲା ମୂର୍ଖ ହୋଇଯିବେ । ସେଠେ କଣ ପ୍ରକୃତ ମାଷ୍ଟରଟିଏ ଅଛନ୍ତି ? ସେଇଟା ଗୋଟାଏ ହାଟ । ବ୍ୟବସାୟୀ ସ୍କୁଲଟ । ଜଣେ ମାଷ୍ଟର ଅଛନ୍ତି, ସେ ସ୍କୁଲରେ ଜଣେ ବଦଳିଆ ଦେଇ ନିଜେ କଣ୍ଟ୍ରାକ୍‌ଟରୀ କରନ୍ତି । ଆଉ ଜଣେ ହୋଟେଲ୍ କରିଛନ୍ତି । ଯେତେବେଳେ ଦେଖିଲେ ହୋଟେଲରେ । ଆଉ ଜଣଙ୍କର କାମ ହେଲା ଓକିଲଙ୍କୁ ପାର୍ଟି ଯୋଗାଇବା । ହେ:ମା: ତ ସେଯ୍ପାର ପାଆନ୍ତି । ଉପର ହାକିମ ହୁକୁମାଙ୍କୁ ଅଫିସବାଲା ଇମିତ ହାତ କରିଛନ୍ତି ସେ ତାଙ୍କ ମୁହଁରେ ଯଜମୁଦ । ଏଥିରେ ପାଠ ହେବ କମିତ ?

ପ୍ରବୋଧ—ବୁଝିଲ ସୁଧା, ମୁଁ ଦେଖୁଚି ତମେ ଗୋଟିଏ ଅଲଇଣ୍ଡିଆ ରେଡ଼ିଓ । କୋଉ ଖବର ତମ ପାଖରେ ନାହିଁ ! ଢେଙ୍କିଶାଳଠୁ ଢେଙ୍କାନାଳ ଯାଏ । କିଓ ଏ ଗୁଲଖଟି ଗପ ସବୁ ତମକୁ କହୁଚି କିଏ ?

ସୁଧା—ଗପ ନୁହେଁ ବିଲକୁଲ୍ ସତ । ତମେ ବୁଝ...ଆମ ମା' ମାନଙ୍କ ଭିତରୁ ଚାରି ପାଞ୍ଚ ଜଣ ମେନେଜିଂ କମିଟିରେ ଥାଆନ୍ତି କି ତାଙ୍କ ବେକ ଝୁଣିହଅନ୍ତି । କାର୍ତ୍ତିକ, ଟ୍ୟୁସନ ପାଇଁ ଛେଳ ମେଣ୍ଢା ପରି ପିଲା ବସଉଚ...ତାଙ୍କୁ ପ୍ରଶ୍ନ କହିଦଉଚ, ନମ୍ବର ବେଶି ଦେଇଦଉଚ, ପୁଣି ସ୍କୁ। ତା ଖରଚରେ ପିଲାକୁ ଲଗଉଚ; କଅଁଳ ପିଲାଏ, କ'ଣ ହିତାହିତ ବୁଝିଛନ୍ତି ! ତମେ ତାଙ୍କୁ ନଷ୍ଟ କରୁନ ? ହେଇ ଦୁଇ ତିନି ଦିନ ତଳେ ଏକସ୍‌କରସନକୁ ଗଲେ ମାଷ୍ଟେ ଯାଇଥିଲେ ଯେ, ମାଷ୍ଟେ ଭାଙ୍ଗ ଖାଇ ମାତାଲ । ପିଲାଏ ଟେକି ଟେକି ଗାଡ଼ି ଭିତରକୁ ଆଣିଥିଲେ । ମୋ ପୁଅ

ପ୍ରତିବାଦ କରି ଶେଷକୁ ଚଡ଼ା ଖାଇବାକୁ ଯାଉଛ । ତମେ ବାପଗୁଡ଼ାକ ପାର୍ଟି ଫିଟେଇଛ ?

ପ୍ରବୋଧ—କଉ ଆମେ ପାର୍ଟି ଫିଟେଇଛୁ କଣ, ଏ ବ୍ୟାଧି ତ କାହାକୁ ଛାଡ଼ୁନି, ଖାଲି ମାଷ୍ଟ୍ରଙ୍କୁ ଦୋଷ ଦେଲେ କଣ ହେବ ?

ସୁଧା—ତମ ଅଫିସ୍‌ମାନଙ୍କରେ ତ ଯୁଆଡ଼ୁ ଆଉରି ସାଂଘାତିକ କାମ ଚାଲିଛି । ଖାଲି ପିଲାଙ୍କ କଥା ବୋଲି ଦୋଷଟା ଖୁବ୍ ବଡ଼ ଦେଖାଯାଉଛି । ନ ହେଲେ ସବୁ ମଣିଷ ସମାନ । ଏଇ ଏକା ଇସ୍କୁଲ କଲେଜରୁ ମାଷ୍ଟ୍ରେ, କିରାଣୀ, ଅଫିସର—ସବୁ ଯାଉଛନ୍ତି । ତେବେ ଆମ ପିଲା କାହିଁକି ବଳପଡ଼ିବ ଆଉମାନେ ମଜା ଦେଖିବେ ?

ପ୍ରବୋଧ—ହଉ, ଡାକିଲ ତାକୁ ।

ସୁଧା—ଏ ବାପା, ମାନସରେ ! ଆରେ ଆସିଲୁ, ବାପା ଡାକୁଛନ୍ତି ।

(ମାନସ ପ୍ରବେଶ କଲା । ବାପାଙ୍କୁ ଦେଖିଲାକ୍ଷଣି ଭୟରେ ହାତରୁ ଖସିପଡ଼ିଲା ବହି, କାଗଜ, ତା ଭିତରେ ଥିବା ଫଟୋ )

ପ୍ରବୋଧ—ଏଁ···ଏସବୁ କଣ ? କଣ ସେ ବହିଟା ? "ନୀଳ ଆଖିର ଡାକ" ( ଗାଲରେ ଗୋଟାଏ ଥାପଡ଼ ବସାଇ ଦେଲେ ) ଛତରା, ଇଂରାଜି ପ୍ରୋଜବହି ଭିତରେ ଉପନ୍ୟାସ ଲୁଚାଇ ପଢ଼ୁଛ । କୋଉ ନୀଳଆଖି ଡାକିଲାଣି ? ( ପୁଣି ଆଉ ଏକ ଥାପଡ଼ ) ।

ମାନସ—ବାପା, ସେଇଟା ଉପନ୍ୟାସ ନୁହେଁ । ଗୋଟାଏ ନାବିକର ଆତ୍ମକାହାଣୀ ।

ସୁଧା—ତମେ ମଣିଷ ନା ପଶୁ । କିଛି ବୁଝିବନି··ପିଲାଟାକୁ ମାରିଦେବନା କଣ ?

ପ୍ରବୋଧ—ସେଇଟା ପୁଣି କ'ଣ, କୋଉ ଝିଅର ଫଟୋ ?

ସୁଧା—ନଆଁ ଲଗିଯାଉ···ପୋଡ଼ିଯାଉ । ତମ ଆଖିରେ କଣ ଜାଲମା ଭିଡ଼ିଗଲାଣି ? ସେଇଟା କଣ ଫ୍ରିଅ ଫଟୋ ? ନିଜ ପିଲାକୁ ବି ଚିହ୍ନି ପାରୁନ । ଗତ ପ୍ରାଇଜରେ ମୋ ମାନ, ଫ୍ରିଅ ପାର୍ଟିକର ମେଡ଼ାଲ ପାଇଥିଲା । ସେ ତା ନିଜ ଫଟୋଟା ସଜକରେ ଉଠାଇକରି ରଖିଚ, ତମର କଣ ଗଲା ? ପୋଡ଼ିଯାଉ ତମ ହତ୍ତର—ଖାଲି ମାଡ଼···ପିଲାଟାକୁ ବାଡ଼େଇ ବାଡ଼େଇ ପଶୁ କରିଦେଲଣି । ଦିନକ ପାଇଁତ ଶ୍ରଦ୍ଧାରେ ପିଲାକୁ ପାଖକୁ ଡାକନ, ତମର କୋଉ ଅଧିକାର ଅଛି ଦଣ୍ଡ ଦେବାକୁ ? ଖାଲି ବାପ ବୋଲି । ଆରେ···।

ପ୍ରବୋଧ—ମୋର ତ କିଛି ଅଧିକାର ନାହିଁ, ଏଗୁଡ଼ିକ ପୁଣି କଣ ?

ସୁଧା—ତମ ଛଅଣ ଦୃଷ୍ଟି କୋଉଠେ ନ ପଡ଼ୁଚି । କଓ ତମ ଡରରେ ସେ ତା କବିତାଗୁଡ଼ିକୁ ତକିଆ ଭିତରେ ବି ଲୁଚାଇଲା । ସେଥିରୁ ବି ତୁମେ ତାକୁ ବାହାରକରି ଆଣିଲ । ତମେ ତାକୁ ପଙ୍ଗୁ କରିଦେବନା କଣ !

ପ୍ରବୋଧ—ଓ ! ନେତା ସାଥିକୁ କହ । ତୋତେ ସାବାଡ଼ି କରିଦେବ । ଯା ଦେ:ମା:ଙ୍କୁ କ୍ଷମା ମାଗିବୁ । ଯା···ମୋ ମୁହଁରୁ ଚାଲିଯା କହୁଚି ।

ମାନସ—( କାନ୍ଦ କାନ୍ଦ ଚାଲିଗଲା ) ।

ସୁଧା—ମୁଁ କହୁଚି ତମେ ସାବଧାନ ହୁଅ···ପିଲାମନ···କେତେ-ବେଳେ କଣ ଅଛି । ସବୁ କଥାରେ ଶାସନଟା କିଛି ଭଲକଥା ନୁହେଁ । ହଇହେ। ଗୋଟାଏ ପିଲାକୁ ତ ଚଳେଇ ପାରୁନ ଏଡ଼େବଡ଼ ଅଫିସ ଚଳଉଚ କମିତ ?

ପ୍ରବୋଧ—ତମେ ବି ସାବଧାନ ରହ । ମୁଁ ତାକୁ ଶାସନ କଲା-
ବେଳେ ତମେ ଇମିତ ଓକଲତି କଲେ ପିସ୍‌ଠା ଚଟାପଟ୍
ଦେଇଦେବି କହୁଚି, ସାବଧାନ !

ସୁଧା—ହଇହୋ ତମେ କି ପିସ୍ ଦେବ ? ତମ ଜୀବନଟା ତ ପିସ୍
ଆଦାୟ କରି କରି କଟିଗଲା, ମୋତେ କି ପିସ୍ ଦେବ !
ତମେ ତ କୁହ ମୋର ଶରୀଦେଇ କାନ୍ଦଯାଏ ଦଉଡ଼; ହେଲେ
ତମେ ବାଣୀବିହାର ପାଣିଟାଙ୍କି ତ ମାଡ଼ୁଚ, ଏତେଗୁଡ଼ାଏ
ପାଠ ତ ପଢ଼ିଚ, କହୁଚ କଣନା ପିଲା କବିତା ଲେଖିବାଟା
ଖରାପ । ଖେଳ, କସରତ, କବିତା ଲେଖା, ଡ୍ରାମା ଆଜି
କା ପାଇଁ—

( ଭିତରୁ ଡାକ ଶୁଣାଗଲା )

ଶବ୍ଦ—ପ୍ରବୋଧବାବୁ ଅଛନ୍ତି ? ପ୍ରବୋଧବାବୁ !

ପ୍ରବୋଧ—ଅଛି ଅଛି ଆଜ୍ଞା—ଯାଉଚି ( ପ୍ରସ୍ଥାନ ) ।

ସୁଧା—ଆରେ···ଏ ମିଣିପଟାକୁ ପାନେ ଚ୍ୟବନପ୍ରାସ ନ ଦେଲେ
ମୁଣ୍ଡ ଠିକ୍ ହେବନି··· । ( ପଟ୍ଟ ପତନ )

### ଚତୁର୍ଥ ଦୃଶ୍ୟ

[ ମାନସ ଓ ମାନିନୀ ଦୁହେଁ କଥାବାର୍ତ୍ତା କରି ମଂଚ
ଭିତରେ ପ୍ରବେଶ କଲେ । ମାନସ ହାତରେ ପ୍ଲାଷ୍ଟିକ୍
ବ୍ୟାଗ୍, ତା ଭିତରେ କେତୋଟି କଣ୍ଢେଇ,
ଗୋଟିଏ ଆସନ । ମାନସର ମୁଖମଣ୍ଡଳ ବଡ଼
ଗମ୍ଭୀର ] .

ମାନସ—ତୁ କାଲି ଡ୍ରାମା ଦେଖିବାକୁ ଆସିଲୁନି ?

ମାନିନୀ—କୋଉ ଡ୍ରାମା ? କେଉଁଠିକୁ ଆସିଥାନ୍ତି ?

ମାନସ—ଆରେ ମୋ ଡ୍ରାମା, ଆମର ଘରେ ଚାଲିଥିଲା ।

ମାନମା—ମାନେ ?

ମାନସ—ମାନେ, ତୋ ମାନସରୋବରରେ କାଲି ମାଡ଼ଗାଳିର ଝଡ଼ ତୋଫାନ ବହୁଥିଲା, ଜୀବନ ଡଙ୍ଗାଟା ଓଲଟି ପଡ଼ିବାକୁ ଆଉ ବାକି ନ ଥିଲାରେ ମାମା ! ଏତେବେଳକୁ ତୁ ଭଙ୍ଗାଡଙ୍ଗାର କେତେଖଣ୍ଡ କାଠ ଭାସୁଥିବାର ଦେଖିଥାନ୍ତୁ । ଦୈବାତ୍ ଡଙ୍ଗାଟା କୂଳରେ ଲାଗିଗଲା ।

ମାନମା—ବାପା ବାଡ଼େଇଲେ ?

ମାନସ—ହେ:ମା:ଙ୍କୁ କ୍ଷମା ମାଗିବାକୁ ଆସିଲିନି ବୋଲି ଯାହା ତ ବାଡ଼େଇଲେ ବାଡ଼େଇଲେ, କହିଲେ···

ମାନମା—କଣ କହିଲେ ?

ମାନସ—ସନ୍ନ୍ୟାସିଙ୍କୁ ଯାହା କହିବାକୁ ଦୂହାଯାଇଥିଲି ।

ମାନମା—ଖୋଲିକରି କହୁନୁ ।

ମାନସ—ସେଗୁଡ଼ାକ ଖୋଲି ହୁଏନି । ଖୋଲିଦେଲେ ତା ଗ୍ୟାସ୍‌ଟା ତୋ ମୁଣ୍ଡ ବୁଲାଇ ଦେବ ।

ମାନମା—ମଜଯା କେଡ଼େ ଭଲଲୋକ···ତୋ ଚଗଲାମୀ ତାଙ୍କୁ ବଗାଡ଼ି ଦଉଚି ।

ମାନସ—ତୁ ବି ଶେଷରେ ଏଇଆ କହିଲୁ ?

ମାନମା—ମୁଁ ଦୋଷଗୁଣ ବାଛୁନି ଯେ···ବାପା ମା'ଙ୍କ କଥା ମାନିଗଲେ କ୍ଷତି କଣ ?

ମାନସ—ସେ ଉପଦେଶ ମୋତେ ଦେ'ନା । କେବଳ ଅମାନିଆ ନୁହେଁ, ତାଙ୍କ ନାଁରେ କୋର୍ଟରେ ନାଲିଶ୍ କରିଚି । କେସ

ଷ୍ଟାର୍ଟ ହେଇଗଲାଣି । ମକଦ୍ଦମା ବିଚାର ହେବ । ସେ ତ ଦୋଷୀ ବୋଲି ପ୍ରମାଣିତ ହେବେ, ଦଣ୍ଡ ବି ପାଇବେ ।

ମାନସୀ—ତୋ ମୁଣ୍ଡ ବିଗିଡ଼ି ଯାଇଛିନା କଣ ! ବାପାଙ୍କ ନାଁରେ କୋର୍ଟରେ କେସ୍ କରିଚୁ !

ମାନସ—ହଁ ହଁ କେସ୍ କରିଛି । ଖାଲି ବାପା ନୁହେଁ ମା, ମାଷ୍ଟ୍ରେ, ଠାକୁରେ, ଶେଷରେ ତୋ ନାଁରେ ବି । ଦରକାର ହେଲେ ଦୋଷୀ ଜେଲ ଯିବ, ଘଣା ପେଲିବ, ନିର୍ବାସନ ଦଣ୍ଡ ପାଇବ । ଅତି ଗର୍ହିତ ହେଲେ ଫାଶିଖମ୍ବରେ ଝୁଲାଇ ଦିଆଯିବ ।

ମାନସୀ—ମୁଁ ଯାଉଚି । ତୋ ମୁଣ୍ଡ ବିଗିଡ଼ି ଯାଇଚି ।

ମାନସ—ଯିବୁ କୁଆଡ଼େ ? ତୁ ଦର୍ଶକ ଗ୍ୟାଲେରୀର ଅଡ଼ିଆନସ୍ । ତୋ ନାଁରୁ କେସ୍ଟା ଉଠାଇ ନେଉଛୁ । ଦେଖ୍ ମୁଁ କଣ କରୁଛି । ପାଟି କରନା···କୋର୍ଟ ଅବମାନନା ଦଣ୍ଡରେ ଆରେଷ୍ଟ କରିବି । ଏ ମକଦ୍ଦମାର ବିଚାରକ ମଧ୍ୟ ମୁଁ ।

ମାନସୀ—ଏଁ···ତୁ ? ?

(ମାନସ ଆସନ ପକାଇ ବସିଲା, ବ୍ୟାଗ୍ ଭିତରୁ ଠାକୁର ମୂର୍ତ୍ତିଟିଏ ବାହାର କରି କହିବା ଆରମ୍ଭ କଲା । )

ମାନସ—"ଠାକୁରେ ! ତମ ଇତିହାସର ଆଜି ସବୁଠୁ ବଳି କଳଙ୍କିତ ଅଧ୍ୟାୟ ଲେଖାହେବାକୁ ଯାଉଛି । ତମ ଭାଗ୍ୟ ଖରାପ, ମଣିଷପିଲା ହାତରେ ଧରାପଡ଼ି ଯାଇଛ । ତମେ ଆଜଯାଏ ମଣିଷକୁ ଦଣ୍ଡ ଦେଇ ଆସୁଥିଲ, କିନ୍ତୁ ଆଜି ମଣିଷ ତମ ଅପରାଧର ବିଚାର କରି ଦଣ୍ଡ ଦେବ । ଚନ୍ଦ୍ର ଅଭିଯାନ ଠାରୁ ଏ କୃତିତ୍ୱ ତା ପକ୍ଷରେ ବେଶି ।

ହିଁ, ଏ ସଂସାରରେ ପହିଲା ନମ୍ବର ଦୋଷୀ, ଭଲ ପାଖରେ ଖରାପକୁ ଜୁଟାଅ, ନଖାହକୁ ଦଣ୍ଡ ଦିଅ । ତମକୁ ସେବାପୂଜା କରି ମୋ ମା’ ମୋତେ ପାଇଥିଲା । ତା ପରି ଦେବୀ-ପ୍ରତିମ ମା’କୋଳକୁ ମୋପରି ଗୋଟାଏ ଅପଦାର୍ଥ ପୁଅ ଦେଲ କାହିଁକି ? ମୋ ପାଇଁ ତାକୁ ସବୁବେଳେ ଦୁଃଖ କଷ୍ଟ ସହିବାକୁ ପଡ଼ୁଛି । ତମେ ଏଥିପାଇଁ ଦୋଷୀ, ମୁଁ ତମକୁ ଦଣ୍ଡ ଦଉଚି, ତମେ ଚିରଦିନ ମୂକ ହୁଅ, ପାଷାଣ ହୁଅ, ଅଥର୍ବ ହୁଅ । ମଣିଷର ଦୟା ଉପରେ ତମ ଦେବତାପଣିଆ ନିର୍ଭର କରିବ ।

ମାନସ—ମାନସୀ, ଏ କିଏ ?

ମାନସୀ—ମୁଁ କିମିତି ଜାଣିବି ?

ମାନସ—ଏ ହେଉଛନ୍ତି ମୋର ପୂଜ୍ୟ ବାପା । ସାକ୍ଷାତ୍ ଈଶ୍ୱର । ହିଁ, ବୁଢ଼ିଆଲ ବାପା, ତମର ଭାଗ୍ୟ ଖରାପ । ପୁଅ ବାପର ଅପରାଧ ଆଜ ବିଚାର କରୁଛି । ସେଇ କାଠଗଡ଼ା ଭିତରେ ଖୁଣୀ ଅପରାଧୀ ପରି ଛିଡ଼ାହୁଅ । ତମେ ମୋର ମଣିଷପଣିଆକୁ ହତ୍ୟା କରିଛ । ତମର ତମ ସନ୍ତାନପାଇଁ ଶ୍ରଦ୍ଧା, ସ୍ନେହ, ସହାନୁଭୂତି କିଛି ନାହିଁ । ମୋ ଜୀବନରେ ଖାଲି ବିଷ ଭରି ଦେଇଚ, ବିଷ···ବିଷ··· । ମୁଁ ସେଇ ନିଷ୍ଠୁର ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଚି ଜନ୍ମଜନ୍ମାନ୍ତରେ ତମେ ଅପୁତ୍ରିକ ହୁଅ । ତମର ଜଳନ୍ତା କୋଳଚୁଲିକୁ ମୋର ଭବିଷ୍ୟତ ଭାଇ ଭଉଣୀ ଆଜ କେହି ନ ଆସନ୍ତୁ । ପିତୃତ୍ୱ ପାଇଁ ତମେ ଅନୁପଯୁକ୍ତ ।

ମାନସୀ—(ଆଖିରୁ ଲୁହ ପୋଛୁ ମାନସ ମୁହଁକୁ ନିରର୍ଥକ ଦୃଷ୍ଟିରେ ଚାହିଁ ରହିଲା ।)

ମାନସ—କାନ୍ଦୁଛୁ···ଦଣ୍ଡ ଖଣ୍ଡ ହୋଇଗଲା ! ( ତୃତୀୟ କଣ୍ଢେଇ ବାହାର କରି ) ଏ କିଏ ?

ମାନସୀ—( ଚାହିଁଲା, ନୀରବରେ ମୁହଁ ପୋଛିଲା । )

ମାନସ—ଏ ମୋର ବୋଉ । ବୋଉ, ତୁ ସବୁଛୁ କି ତତେ କଟେଇକୁ ଚାଣିଲି ବୋଲି ? ବିଗ୍ଭରକ ପାଖରେ ଦୁର୍ବଳତା ନଥାଏ, ଅପରାଧୀ—ଅପରାଧୀ । ମୋତେ ଏତେ ଭଲ ପାଇବାଟା ତୋର ଅପରାଧ । ତୋ ପୁଅ ତୋ ଆଖିରେ ଗୋଟାପଣେ ତୁଳସୀ । ତା ବନ୍ଧୁଆତ୍ତପଣିଆ ତୋ ଆଖିରେ ପଡ଼ିନ । ତୁ ଯିମିତି ହୃଦୟକୁ କଣିଥିଲୁ, ଟିକିଏ କଡ଼ା ମିଠା ଶାସନ କରିଥିଲେ ମୁଁ ଆଜି ଏ ନିଷ୍ଠୁର ଅଭିନୟ କରି ନ ଥାନ୍ତି । ସ୍ନେହ ଯେ ଦେବ, ଶାସନ ଟିକିଏ କରିବାକୁ କିଏ ତାକୁ ମନା ! ତୁ ଏ ଦୋଷରେ ଦୋଷୀ, ଦଣ୍ଡ ଭୋଗ କରିବାକୁ ପଡ଼ିବ । ମୁଁ ଏଇ ଦଣ୍ଡ ଦେଉଛି, ତୋ ପରି ମା ସମସ୍ତଙ୍କୁ ସବୁ ଦେବେ କିନ୍ତୁ କାହାଠାରୁ କିଛି ପାଇବେ ନାହିଁ । (ଚତୁର୍ଥ କଣ୍ଢେଇ ବାହାର କରି) ମାନସୀ, ଏ କିଏ ?

ମାନସୀ—ମୁଁ ଜାଣିନି ।

ମାନସ—ଓ, ଭୁଲିଯାଇଚୁ ! ଏ ହେଉଛନ୍ତି ଆମ ସାର୍ । ସେଇ ଭଙ୍ଗୁଆ ସାର୍, ଯେ ସବୁବେଳେ ଟଳମଳ । ବୁଝିଲେ ସାର୍, ଟିଉସନ୍ ଆଉ ଶିକ୍ଷକତା ଦୁଇଟା ଅଲଗା ଅଲଗା ଧନ୍ଦା । ଗୋଟିକୁ ଧରିଲେ ଅନ୍ୟଟିକୁ ଛାଡ଼ିବାକୁ ପଡ଼ିବ । ତମେ କେତେ ଛାତ୍ରଙ୍କ ଜୀବନ ନଷ୍ଟ କରିଚ···ତମେ ଗଣହତ୍ୟାକାରୀ !

ତମକୁ ଫାଶିକାଠରେ ଝୁଲାଇବାକୁ ମୁଁ ସ୍ୱପ୍ନ ଦେଖୁଛି । ଯାଅ, ସ୍ୱର୍ଗପୁରରେ ବସି ନବୋଇଲାରେ ଗବେଷଣା କରିବ, ଓଡ଼ିଆ ସାହିତ୍ୟରେ ମଧୁସୂଦନ ଦାସଙ୍କର କିଛି ଅବଦାନ ଥିଲା କି ନାହିଁ । (ଆଉ ଗୋଟିଏ କଣ୍ଢେଇ ବାହାର କରି)

ଆଉ ଆପଣ, ପ୍ରଧାନଶିକ୍ଷକ ପଦପାଇଁ ଅଯୋଗ୍ୟ । ଶିଶୁ-ହୃଦୟର ଗହିରା କଥା ତମେ ଶୁଣିନ । ତା ମନକୁ ବୁଝିବାକୁ ଚେଷ୍ଟା କରିନ । ଶିକ୍ଷାଦାନକୁ ପବିତ୍ର କର୍ତ୍ତବ୍ୟ ବୋଲି ଭାବିନ । ବିଦ୍ୟାଳୟରେ ପବିତ୍ର ବାତାବରଣ ରଖିନ । ଆମମାନଙ୍କୁ ମାଙ୍କଡ଼ ପରି ଗଢ଼ିଚ, ଶାନ୍ତିରେ ସିଂହାସନରେ ବସିବ କେମିତି ? ମୁଁ ସବୁ ଦୋଷ ବିଚାର କରି ଏଇ ସ୍ୱପ୍ନ ଦେଉଛି, ଆପଣ ପରଜନ୍ମରେ ଅଷ୍ଟ୍ରେଲିଆର ମେଷରୂପେ ଜନ୍ମ ହେବେ । ଲୋକେ ଆପଣଙ୍କ ଦେହରୁ ଖାଅନ୍ତା ମାଂସ କାଟି ଖାଇବେ । ଆଚ୍ଛା, ଆଜି ବିଚାର ଏତିକି ରହିଲା । ଅପରାଧୀମାନେ ପୁନର୍ବିଚାର ପାଇଁ ଅପିଲ୍ କରିପାରନ୍ତି ।

(ପରଦା)

## ପଞ୍ଚମ ଦୃଶ୍ୟ

[ ମାନସ ଜନ୍ମଦିନର ନୂଆ ବେଶ ପୋଷାକରେ ସଜ୍ଜିତ । ଗୀତ ଗାଇ ମାର୍ଚ୍ଚିଂ କରି ପ୍ରବେଶ କଲା ସେ । କିଛି ସମୟ ପରେ ପ୍ରବେଶ କଲେ ତା ବୋଉ ଓ ମାନିନୀ ]

—ଗୀତ—

କିବା କଣ ଯାଏ କେବେ ଦିବ ରେ· · ·ଦିବ ରେ· · ·ଦିବ ରେ,
ଜନ୍ମଦିନ ଆଜି ମୋର ନାଚେ କେତେ ଛବି ରେ· · ·ଛବି ରେ ।

କଦମ୍ କଦମ୍ ଆଗେଇ ଯିବ ଖାଲ ଢିପ ନ ମାନି
ଆଗରେ ମୋ ନୂଆ ଆଶା ଫସଲର କମାଣି,
ଲେଫ୍‌ଟ୍ ରାଇଟ୍, ଲେଫ୍‌ଟ ରାଇଟ୍
ଉଠିଲାଣି ରବ ରେ,
କିଏ କଣ ଯାଏ କେବେ ଦବ ରେ···ଦବ ରେ ॥

ସୁଧା—କରେ ଚଗଲା, ଏଇଟା କ'ଣ ମାର୍ଚ୍ଚିଂ ପଢ଼ୁଆ, ନା ଘର ? ଏଇଟି, ମାଉସୀ ତୋ ଜନ୍ମଦିନ ପାଇଁ କଣ ସବୁ ପଠେଇଛନ୍ତି, ହିଅ, ନଜେ ନେଇଆସିଚ ।

ମାନସ—ଆଚ୍ଛା ମାନି, ଆଣିଲୁ । ଦେଖେ, ମାଉସୀ କଣ ପଠେଇ ଛନ୍ତି । ( ମାନମା ପାଖକୁ ନେଇ ଦେଖାଇଲା ) ମାନେ ଏକ··· ଗୋଟାଏ କଲମ, ହାଁ···ଦୁଇ, ଗୋଟାଏ ହ୍ୟାଣ୍ଡକରଚିଫ୍··· ମାନେ ସୁବାସିତ ରୁମାଲ । ତିନି···ଗୋଟାଏ ବହି "ଟମକକାଙ୍କ କୁଟୀର" । ବୋଉ, ଏଇଠେ ମାଉସୀଙ୍କର କାଲକୁଲେସନ୍ ଭୁଲ ହୋଇଗଲା । ଏ ବହିଟା ବାପାଙ୍କ ପାଖକୁ ପଠେଇଥିଲେ ଭଲ ହୋଇଥାନ୍ତା । ସେ ପଢ଼ିବା ପରେ ହୁଏତ କ୍ରୀତଦାସକୁ ମୁକ୍ତ କରିଥାନ୍ତେ ।

ସୁଧା—ସବୁବେଳେ ତୋର ସେଇ ଚଗଲାମି ।

ମାନସ—ଚଗଲାମି ନୁହେଁ ଲୋ ବୋଉ । ଆଚ୍ଛା, ଥାଉ ଥାଉ, ଜନ୍ମଦିନରେ ଏକଥାଗୁଡ଼ାକ ମନେପକାଇ ଲାଭ କଣ ? ଆରେ···ଭୁଲ ତ ହେଇଗଲା । ମାଉସୀ କ'ଣ ମିଷ୍ଟିମୁଖ ପାଇଁ କିଛି ପଠେଇ ନାହାନ୍ତି ?

ସୁଧା—ତମେ ହହେଁ ବସ, ସେ ପଠେଇଛନ୍ତି । ମୁଁ ଆଣୁଚି, ଆରେ, ଆଜି ତ ଖାଲି ପିଠା ଖାଇବାର ଦିନ । (ପ୍ରସ୍ଥାନ)

ସ୍ୱର—ପ୍ରବୋଧବାବୁ ଅଛନ୍ତି ? ପ୍ରବୋଧବାବୁ ଅଛନ୍ତି ?
(ଠିକ୍ ଏତିକବେଳେ ମାନସୀ ତା ଫ୍ରକ୍‌ର ପକେଟରୁ ଗୋଟାଏ ମିଠେଇ ବାହାର କରି ମାନସକୁ ଖୁଆଇ ଦେଉଥିଲା ଓ ଏ ଡାକ ଶୁଣିଲାକ୍ଷଣି ତା ପାଟିରୁ ସେଇଟା ଖସିପଡ଼ିଲା । ମାନସୀ ମାନସର ଇଙ୍ଗିତରେ କବାଟ ଖୋଲିବାକୁ ଗଲା । ପ୍ରବେଶ କଲେ ପ୍ରଧାନ ଶିକ୍ଷକ)

ପ୍ର. ଶିକ୍ଷକ—କରେ ଚଗଲା, ଆଜି କ'ଣ ଜନ୍ମଦିନ ନା କଣ ?

ମାନସୀ—ହଁ ସାର୍, ମାନସର ଜନ୍ମଦିନ ।

ପ୍ର. ଶିକ୍ଷକ—କରେ ବାପା କାହିଁ ?

ମାନସ—କୁଆଡ଼େ ଯାଇଥିଲେ, ହେଇ ଆସିଲେଣି । ତାଙ୍କ ସାଥିରେ ସାହିତ୍ୟ ସାର୍ ବି···

ପ୍ର. ଶିକ୍ଷକ—(ପଛକୁ ମୁହଁ ଫେରାଇ) ନମସ୍କାର୍··ନମସ୍କାର !

ପ୍ରବୋଧ—ନମସ୍କାର ସାର୍ । ଆଜି ମୋର ବଡ଼ ଭାଗ୍ୟର ଦିନ । ରଙ୍କ ଘରେ ରାଜକୁଣିଆ ।

ପ୍ର. ଶିକ୍ଷକ—ହେଃ··ହେଃ···ନା···ନା ସିମିତି କହନ୍ତୁ ନାହିଁ । ଆପଣ ରଙ୍କ ନୁହନ୍ତି କି ଆମେ ରାଜା ନୋହୁ । କେବଳ ସେଇ କୁଣିଆ କଥାଟି ଠିକ୍ । ଶିକ୍ଷକ ଆଉ ଅଭିଭାବକର ସମ୍ପର୍କ କୁଣିଆର ସମ୍ପର୍କ ହେବା ଉଚିତ୍ ନୁହେଁ । ସେଇଟା ହିଁ ହେଉଛି; ସେଇଥିପାଇଁ ଆମେ ପିଲାମାନଙ୍କର କିଛି ଉପକାର କରିପାରୁନେ ।

ପ୍ରବୋଧ—ଆରେ ବାପା, ଆଲୋ ମା, ସାର୍‌ଙ୍କୁ ନମସ୍କାର କରିଛ ?

ପ୍ର. ଶିକ୍ଷକ—ହଁ···ହଁ···ଚଗଲାର ସେଥିରେ ବାକି ନ ଥାଏ । ହାଟ, ବାଟ, ଦାଣ୍ଡ, ବଜାର ଯୋଉଠେ ଦେଖିଲେ ସେ ଅବହେଳା କରେନ । ଚଇତନବାବୁ, ଆପଣ କମିତି ବାହାର ପଡ଼ିଲେ ? ଉବଲ କୁଣିଆ !

ଶିକ୍ଷକ—ପ୍ରବୋଧବାବୁ ଆମ ଘରକୁ ଆଜ ଯାଇଥିଲେ, ସେ ଟାଣି ଆଣିଛନ୍ତି । ଆଉ ଆପଣ ?

ପ୍ର. ଶିକ୍ଷକ—ବୁଝିଲେ ପ୍ରବୋଧବାବୁ, ଗୋଟାଏ ଶୁଭ ଖବର ଦେବାକୁ ଆସିଛୁ ।

ପ୍ରବୋଧ—ଶୁଭ ଖବର···ଏ ଅଶୁଭ ବ୍ୟକ୍ତିର ଶୁଭ ଖବର କଣ !

ପ୍ର. ଶିକ୍ଷକ—ଆମ ମାନସ ଦିଲ୍ଲୀରେ ଭ୍ରମଣ ଦେବାପାଇଁ ସର୍ବଭାରତୀୟ ସ୍ତରରେ ମନୋନୀତ ହୋଇଛୁ । ଆନ୍ତର୍ଜାତିକ ଶିଶୁ ସମ୍ବତ୍ସର ପାଇଁ ଏକ ଜାତୀୟ ଶିଶୁମେଳା ଦିଲ୍ଲୀଠାରେ ହେଉଛୁ । ଆସନ୍ତା ସପ୍ତାହରେ ସେ ଯିବ ।

ପ୍ରବୋଧ—ତାକୁ ନିର୍ବାଚନ କଲା କିଏ ? ଏ ଚଗଲା ଓଡ଼ିଶାର ନାଁ ରଖିବ ତ !

ପ୍ର. ଶିକ୍ଷକ—ପ୍ରାଦେଶିକ ସ୍ତରରେ ଯେଉଁ ପ୍ରତିଯୋଗିତା ହୋଇଥିଲା ତାର ଫଳାଫଳ କାଲି ଜଣାପଡ଼ିଛୁ । ସେ ପ୍ରଥମ ହୋଇଛୁ । ସେଥି ନିର୍ବାଚକମଣ୍ଡଳୀରେ ଆମ ଚୈତନ୍ୟବାବୁ ବି ଥିଲେ ।

ପ୍ରବୋଧ—ତା ହେଲେ ଏଇଟା ସାର୍‌ଙ୍କ କାମ ।

ଶିକ୍ଷକ—ନା···ନା···ମୁଁ ଏକା କଣ କରିପାରିବି ? ତା ଭିତରେ ୭ ଜଣ ଥିଲେ । ସମସ୍ତଙ୍କ ମାର୍କ ଗୁପ୍ତ ରଖାଯାଇ ଉପରକୁ ପଠା ଯାଇଥିଲା ।

ପ୍ରବୋଧ—(ମାନସର ପିଠି ଥାପୁଡ଼େଇ) ବୁଝିଲ ବାପା ! ଏ ଶୁଭ ସମ୍ବାଦ ଟୋ ଜନ୍ମଦିନର ସବୁଠାରୁ ବଳ ଶୁଭ ସମ୍ବାଦ, ଶ୍ରେଷ୍ଠ ପୁରସ୍କାର । ଏ ହେଉଚି ଭଲପଣିଆର ପୁରସ୍କାର ।

ପ୍ର. ଶିକ୍ଷକ—ଭାରି ଭଲ ପିଲାଟାଏ, କିନ୍ତୁ ବଡ଼ ବିପ୍ଳବୀ । ଭଲ କଥା, ଦୁଃସାହସିକତାର ଏହା ସୂଚନା । ମଣିଷ ଦୁଃସାହସୀ ନ ହେଲେ, କିଛି ଗୋଟାଏ ରିସ୍କ ନ ନେଲେ, ଆଗେଇଁ ପାରିବନି, ତେବେ ଜୀବନର ସ୍ୱାଦୁ ବି ପାଇପାରିବନି ।

ଶିକ୍ଷକ—ଛୋଟିଆ ଛୋଟିଆ କଥାରେ ଜିଦ୍ ନ କରି ଖୁବ୍ ବଡ଼ କଥାପାଇଁ ଜୀବନକୁ ପଣ କରିବା ଉଚିତ । ମୁଁ ତାକୁ ପ୍ରକୃତରେ ଭାରି ଭଲପାଏ ତାର ସ୍ପଷ୍ଟବାଦିତା ପାଇଁ । କିରେ, ଆଗ କଥା ସବୁ ମନେ ରଖିଚୁ ନା କଣ । ମୋ ଭୁଲଟା ମୁଁ ସଂଶୋଧନ କରି ନେଇଚି ଏ ଭିତରେ । ମୁଣ୍ଡ ମୋର ଠିକ୍ ହୋଇଗଲାଣି । ଆଜି ମେଡ଼ିସିନ୍‌ର ରିଆକ୍‌ସନ୍ ନାହିଁ ।

ମାନସ—( ପାଦତଳେ ପ୍ରଣାମ କଲା । )

ପ୍ର. ଶିକ୍ଷକ—ବୁଝିଲେ ପ୍ରବୋଧବାବୁ ! ଚୈତନ୍ୟବାବୁ କେବଳ ମୋ ସ୍କୁଲ୍ କାହିଁକି ଓଡ଼ିଶାର ଜଣେ ଖ୍ୟାତନାମା ଶିକ୍ଷକ । ମଝିରେ ତାଙ୍କ ଦେହ ଖରାପ ହେଲା । ଡାକ୍ତର କି ଔଷଧ ଦେଲେ କେଜାଣି ତାକୁ ଖାଇବା ପରେ ମୁଣ୍ଡ ବିଲ୍‌କୁଲ ବିଗିଡ଼ିଗଲା । ସବୁବେଳେ ପ୍ରଳାପ କଲେ, ଏଣୁତେଣୁ କହିଲେ । ସବୁ ଭୁଲିଗଲେ । କାହାକୁ କେତେବେଳେ ଯେ କଣ କହିଲେ···ଭଗବାନଙ୍କ ଆଶୀର୍ବାଦ ତାଙ୍କର ଜଣେ ପୁଅ ମେଡ଼ିସିନ୍ ସ୍ପେସିଆଲିଷ୍ଟ, ସେ ଏବେ ଭଲ କରିଦେଇଛି ।

ଶିକ୍ଷକ—ସତରେ ପ୍ରବୋଧବାବୁ···ମରି ଯାଇଥାନ୍ତେ । ବହୁତ ଅପଦସ୍ତ ହୋଇଛୁ । ଭଗବାନ ରକ୍ଷାକଲେ ।

ପ୍ରବୋଧ—ଭଗବାନ, ତୁମେଇ କରୁଣାମୟ । ଆରେ ଚଗଲା ନେ, ତୋ ଜନ୍ମଦିନର ଉପହାର ।

ପ୍ର. ଶିକ୍ଷକ—ସେ କଣ ?

ଶିକ୍ଷକ—ମାନସ ଲେଖିଥିବା କବିତାଗୁଡ଼ିକର ଆତ୍ମପ୍ରକାଶ ।

ପ୍ର. ଶିକ୍ଷକ—(ଆନନ୍ଦରେ ବିହ୍ୱଳ ହୋଇ) ଏଁ ଭାରି ତ ବଢ଼ିଆ ନାଁଟିଏ "ମିଠା ମିଠା ସପନ" । କବି ମାନସ ରଞ୍ଜନ ଦାସ । ବିୟୁଟିଫୁଲ୍ !

ପ୍ରବୋଧ—(କମ୍ପ୍ର କଣ୍ଠରେ) ସେ କବିତା ଲେଖେ, ମୁଁ ଶୁଣେ । ତା ବୋଉର ଗାଳିରେ ଥରେ ଅଧେ ମନଦେଇ ତାହା ପଢ଼ିଲି, ଭଲ ଲାଗିଲା । ତା ଅଜ୍ଞାତରେ କବିତା ପ୍ରତିଯୋଗିତାକୁ ପଠାଇଥିଲି । ପ୍ରଥମ ପୁରସ୍କାର ମିଳିଲା ପାଞ୍ଚଶହ ଟଙ୍କା । ମୁଁ ଆଜି କିଛି ମିଶାଇ ବହିଟି ଛପାଇଦେଲି ଜନ୍ମଦିନର ଉପହାର ପାଇଁ । ଏ ସବୁ କବିତାକୁ ସଂଶୋଧନ କରିଛନ୍ତି ଚୈତନ୍ୟବାବୁ । ତାଙ୍କଠାରେ ମୁଁ ପ୍ରକୃତରେ ଋଣୀ । ଦୁହେଁ ପ୍ରେସ୍‌ରୁ ବହି ନେଇ ଆସୁଛୁ ।

ପ୍ର. ଶିକ୍ଷକ—ମୁଁ ଆପଣଙ୍କୁ ଭୁଲ ବୁଝି ପିଲାର ଟି.ସି. ନେଇଯିବାକୁ ଲେଖିଥିଲି । ମୋର ଧାରଣା ଥିଲା, ପିଲା ପ୍ରତି ଆପଣ ବଡ଼ ଉଦାସୀନ । ପ୍ରକୃତରେ ଆପଣ ଯୋଗ୍ୟ ସନ୍ତାନର ଯୋଗ୍ୟ ପିତା ।

ପ୍ରବୋଧ—ବାପା, ନେ । ସାର୍‌ଙ୍କୁ ବନ୍ଦ ଦେ । ପ୍ରଣାମ କର ପଦ-ଧୂଳି ଆଣ । ସେ ତୋତେ ଆଶୀର୍ବାଦ କରନ୍ତୁ, ତୋ ଲେଖମା ଯଶସ୍ୱୀ ହେଉ ।

ମାନସ—(କାନ୍ଦ କାନ୍ଦ ପ୍ରଧାନ ଶିକ୍ଷକ ଓ ଶିକ୍ଷକଙ୍କ ପଦଧୂଳି ନେଲା) ପିତାଙ୍କୁ ପ୍ରଣାମ କଲା ।

ପ୍ରଧାନ ଶିକ୍ଷକ—(ତାକୁ ଆଲିଙ୍ଗନ କରି) ଆମେ ତୋ ଗୁରୁ । ମାଟି ମା' ପରି ସବୁ ଆବର୍ଜନାକୁ ଗର୍ଭସ୍ଥ କରିବାର ଶକ୍ତି ଆମର ଅଛି । ତୋ ପାଖରେ ଯାହା କିଛି ଆବିଳତା ଅଛି, ମୁଁ ତାକୁ ମୋ ଭିତରକୁ ନେଇଯାଉଛି । ଆଶୀର୍ବାଦ କରୁଛି, ତୋ ଜୀବନ ମଙ୍ଗଳମୟ ହେଉ । —ମଂଚ ଅନ୍ଧକାର—

## ଶେଷ ଦୃଶ୍ୟ

[ ପର୍ଦ୍ଦା ଉଠିଲା, ମାନସ ପୁଣି ତାର କୋର୍ଟ ବସାଇଛି । ବ୍ୟାଗ୍‌ରୁ ଗୋଟିଏ ଗୋଟିଏ କଣ୍ଢେଇ ବାହାର କରି କ୍ରନ୍ଦିତ କଣ୍ଠରେ କହିଲା ]

ମାନସ—ମାନମା···ତୁ ସେଇଠେ ବସ । ଜୀବନରେ ଯେଉଁ ଚରମ ଅପରାଧ କରିଛି, ସାରା ଜୀବନ କାନ୍ଦି କାନ୍ଦି ଲୁହ ଗଡ଼ାଇଲେ ବି ସେ କଳଙ୍କ ଲିଭିବ ନି । ଶାସ୍ତ୍ର କହେ—ଅନୁତାପ; ଅନୁଶୋଚନା ମଣିଷର ପାପତାପ ଧୋଇଦିଏ । କିନ୍ତୁ ମୋ ପାପକୁ କେହି ଧୋଇ ପାରିବେ ନି । ଅମାବାସ୍ୟାର ଅନ୍ଧାରଠାରୁ ବି ଏହା କଳା ।

ମାଳମା—ଏବେ ବ୍ୟସ୍ତ କାର୍ତ୍ତିକ ରେ ମାନ, ଭୁଲ୍ ତୁ ସେ ବୁଝିପାରନ୍ତୁ ସେଇଟା ଯଥେଷ୍ଟ ।

ମାନସ—(ଠାକୁରଙ୍କ ମୂର୍ତ୍ତି ଧରି) ହେ ଦୟାମୟ ! ସତରେ ତମେ କରୁଣାମୟ, କରୁଣାର ସାଗର । ଅନାଥର ନାଥ । ତମର ଦୀନବନ୍ଧୁ ନାମ ଯଥାର୍ଥ । ତମ ରହସ୍ୟ ଭେଦ କରିବା ମୋ ପରି ଏକ ଅବୋଧ ବାଳକ ପକ୍ଷେ ଅସମ୍ଭବ । ସେ ଦିନ ମୁଁ ତମକୁ ଯୋଉ ଦଣ୍ଡ ଦେଇଥିଲି, ଆଜ ତାହା ଫେରାଇ ନେଉଛୁ । ହେ କ୍ଷମାଶୀଳ, ମୋତେ କ୍ଷମା ଦେବ । ଏ ଅଧମ ପୁଅକୁ ତୁମେ ଦେବ ତୁଲ୍ୟ ପିତା ଦେଇଛ, ଦେବଦୂତ ତୁଲ୍ୟ ଶିକ୍ଷକ ଦେଇଛ, ଲକ୍ଷ୍ମୀ ତୁଲ୍ୟା ମା ଦେଇଛ, ଆଉ ଅଧିକ କ'ଣ ଦେଇଥାନ୍ତ ? ମୁଁ କୁଳାଙ୍ଗାର ତମ ଆଶୀର୍ବାଦକୁ ବୁଝି ପାରିଲିନି । କ୍ଷମା ଦିଅ ପିତଃ !

(ଦୃଶ୍ୟ କର୍ଣ୍ଣେଇକୁ ଧରି)

ହେ ପିତା ! ତମେ ବି କ୍ଷମାଶୀଳ । ଆଜ ମୋର ପ୍ରାଣେ ପ୍ରାଣେ ସେହି ମହା ସଙ୍ଗୀତଟି ଝଂକୃତ ହେଉଛି—

"ପିତା ଧର୍ମ, ପିତା ସ୍ୱର୍ଗ, ପିତାହିଁ ପରମ ତପଃ
ପିତରି ପ୍ରୀତିମାପନ୍ନେ ପ୍ରିୟନ୍ତେ ସର୍ବ ଦେବତା ।

ସତରେ ବାପା, ତୁମେ ସ୍ୱର୍ଗଠାରୁ ବି ମହାନ୍ । ସାଗରଠାରୁ ବି ପ୍ରଶାନ୍ତ । ମୁଁ ସାଗରର ବେଳାଭୂମିରେ ଛିଡ଼ା ହୋଇ ତାର ଭୀମ ଗର୍ଜନ ଶୁଣିଛି, କିନ୍ତୁ ମୋର ଶିଶୁମନ ତାର ଗଭୀରତାକୁ ମାପି ପାରିନି, ଅନନ୍ତତା କଳି ପାରିନି । କେବଳ ସିନା ବିଷ ଗୃହିତ, କିନ୍ତୁ ଅମୃତର ସନ୍ଧାନ ନେଇନି । ପିତା, କ୍ଷମା ଦିଅ ଏ ଅଧମ ସନ୍ତାନକୁ । ଠାକୁରଙ୍କୁ ଡାକ

ତାକ ମୋ ପରି କଳଙ୍କିତ ପୁଅକୁ କୋଳକୁ ଆଣିବା ଅପେକ୍ଷା ଅପୂର୍ବିକ ହେବା କଣ ଭଲ ନୁହେଁ ?

(ତୃତୀୟ କଣ୍ଠେଇ ବାହାରି କରି)

ବୋଉ, ମୁଁ ତୋର ରକ୍ତର ପଦ୍ମ, ପ୍ରାଣର ସ୍ପନ୍ଦନ । ମୋ ଭିତରେ ତୋ ନିଜକୁ ପୂର୍ଣ୍ଣ ପାଇଛୁ । ମୋ ପରି କଳଙ୍କକୁ ନିମନ୍ତ୍ରଣ କରି କି ଲାଭ ପାଇଛୁ ? ସବୁବେଳେ ଗାଳି, ନିନ୍ଦା, ଭର୍ତ୍ସନା, ଅପମାନ ଜୀବନର ଧ୍ୟେୟ ହୋଇଛି । ତୋ ସନ୍ତାନ ପାଇଁ ଜଳି ପୋଡ଼ି ପାଉଁଶ ହୋଇଛୁ । ତୋତେ କିଛି ମିଳିନି···କିଛି ବି ମିଳିବନି । ମୁଁ ତୋର ନିଷ୍ଠୁର ସନ୍ତାନ । ଦଣ୍ଡ ବଦଳାଇ ପାରିବନି । ତୋର ଉପୁଙ୍କର ସରଳତା ପାଇଁ ସେ ଦଣ୍ଡ କାଏମ୍ ରହିଲା । ସବୁ ଦବୁ, କାହାରିଠାରୁ କିଛି ପାଇବୁନି ।

(ଚତୁର୍ଥ ଓ ପଞ୍ଚମ କଣ୍ଠେଇ ଏକ ସଙ୍ଗେ ବାହାରି କରି)

ସାର୍, ମୁଁ ଆପଣଙ୍କର ଅଧମ ଶିଷ୍ୟ । କି ମହାନ୍ ଆପଣ ! କି ନୀଚ ମୁଁ ! ଶୁଣା ଅଶୁଣା, ଜଣା ଅଜଣା କେତେ କୁତ୍ସା ରଟନା ନ କରିଛି ! ଦେବତାକୁ ଦାନବ ବୋଲି କହିଛି । ଆପଣଙ୍କର ଶ୍ରଦ୍ଧାକୁ ସନ୍ଦେହ କରିଛି । ମୋ ବିଷୟରେ ଆପଣ ଫାଶି ପାଇଥିଲେ, କିନ୍ତୁ ଆଜି ଦେଖୁଛି ସେ ଦଣ୍ଡଟା ମୋ ପାଖକୁ ଫେରିଆସିବା ଉଚିତ । ଆପଣଙ୍କ ହୃଦୟ-ହିମାଳୟର ହିମ-ପ୍ରହାର ଖାଇ ମମତାର ମଣିମଣ୍ଡପକୁ ଖୋଜିଲି ନାହିଁ । ଏ ଅଧମକୁ କ୍ଷମା ଦିଅ ପିତା ! କରୁଣାର କୈବଲ୍ୟ-କଣିକାରୁ ବଂଚିତ କରିବେନି । ମାନିଲି, ତୁ ପଥର ପାଲଟି ଗଲୁଣି ନା କଣ ? ଆ···ତୋ କାନ୍ଦରେ ମୋତେ ବି

ଭଗୀଦାର କର । ତୋ ଲୁହରେ ମୋ ଲୁହ ମିଶିଯାଉ । ତୁ ମୋର ପୁଣ୍ୟଶୀଳା ଭଉଣୀ । ଆ···ସାଥିହୋଇ ସେଇ ଗୁରୁମନ୍ତ୍ରଟି ଉଚ୍ଚାରଣ କରିବା—

"ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱର
ଗୁରୁ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ।

(ମିଳିତ କଣ୍ଠର ଝଙ୍କାର ଗୁମୁରି ଉଠିଲା । ପର୍ଦ୍ଦା ଆସ୍ତେ ଆସ୍ତେ ଖସିଆସିଲା । )

## ପାତ୍ରସୂଚୀ

ସମ୍ରାଟ ଶାହାଜାହାନ—ମୋଗଲ ସମ୍ରାଟ

ନର୍ତ୍ତକୀ—ଶାହାଜାହାନଙ୍କ ନର୍ତ୍ତକୀ

କଙ୍କାଳ—ଜନତାଙ୍କ ପ୍ରତିନିଧିର ଛାୟା

ପ୍ରହରୀ ପ୍ରଥମ ଓ ଦ୍ୱିତୀୟ—ରାଜଦରବାରର ପ୍ରହରୀ

ଜନତା—ପ୍ରଥମ, ଦ୍ୱିତୀୟ, ତୃତୀୟ

ଦୁଇଟି ଛାୟାମୂର୍ତ୍ତି—ଶାହାଜାହାନ ଓ ନର୍ତ୍ତକୀର

# ନିକିତିର ଅଭିଷେକ

[ସମ୍ରାଟ ଶାହାଜାହାନଙ୍କ ପ୍ରମୋଦକକ୍ଷ, ସେ ତନ୍ମୟବିଭୋର ହୋଇ ନର୍ତ୍ତକୀର ନର୍ତ୍ତନ ଉପଭୋଗ କରୁଛନ୍ତି—ତାଳେ ତାଳେ ନୂପୁରର ନିକ୍ୱଣ—ଅଦୂରରୁ ଶାହାନାଇର ସ୍ୱର ମୂର୍ଚ୍ଛନା ଭାସି-ଆସୁଛି । ]

ଶାହାଜାହାନ--ବାଃ···ବାଃ···ଚମତ୍କାର···ଚମତ୍କାର ! ମମତାଜ ! ମମତାଜ ! ଦେଖ, ଏ ନର୍ତ୍ତକୀର ସାରା ଶରୀରରେ ସୌନ୍ଦର୍ଯ୍ୟର ଯମୁନା କପରି ପ୍ରବାହିତ ହେଉଛି । ତାର ନୀଳ ନୟନରେ ନୀଳ ଯମୁନାର ଗୁହାରି । ଅଙ୍ଗେ ଅଙ୍ଗେ ବସନ୍ତର ଅପୂର୍ବ ରୂପରାଗ । ନର୍ତ୍ତକୀ, ବନ୍ଦକର ତୁମ ନର୍ତ୍ତନ ।

(ହଠାତ୍ ନୃତ୍ୟ ଛନ୍ଦ ବନ୍ଦ ହୋଇଗଲା, ନର୍ତ୍ତକୀ ବ୍ୟାକୁଳ ନୟନରେ ଚୁହିଁ ରହିଲା ସମ୍ରାଟଙ୍କ ମୁଖମଣ୍ଡଳକୁ )

ନର୍ତ୍ତକୀ—ସମ୍ରାଟ ! ଏ ହତଭାଗିନୀ ନର୍ତ୍ତକୀ ପ୍ରତି ମଣିମାଙ୍କର ଏ ନିଷ୍ଠୁର ଆଦେଶ କାହିଁକି ? କ୍ଷମା ଦିଅନ୍ତୁ ସମ୍ରାଟ, ନିର୍ଦ୍ଦେଶ ଦିଅନ୍ତୁ ।

ଶାହାଜାହାନ—ନିର୍ଦ୍ଦେଶ ? କାହାକୁ ନିର୍ଦ୍ଦେଶ ଦେବ ? ଏ ଯମୁନା କ'ଣ ସମ୍ରାଟ ଶାହାଜାହାନର କଥା ମାନିବ ? ବଡ଼ ଉଦ୍ଧତ ଏ ଯମୁନା, ମୁଁ ତାକୁ ଶାସ୍ତି ଦେବି···ହଁ, ଶାସ୍ତି ଦେବି । ସେ ମୋର ପ୍ରାଣର ମମତାଜକୁ ତାର କୋଳକାଖରୁ ମୁକ୍ତ ଦେବାକୁ ଚାହେଁନା । ତା'ର ଏତେ ଆସ୍ପର୍ଦ୍ଧା, ମୋଗଲ

ରାଜଲକ୍ଷ୍ମୀ ହେବ ତା କୋଳର କେଳି-ଚମ୍ପକ ? କିଏ ଅଛରେ ?

ପ୍ରହରୀ—(ପ୍ରବେଶ କରି) ଜହାଁପନା । ପ୍ରଣାମ ଗ୍ରହଣ କରନ୍ତୁ ।

ଶାହାଜାହାନ—ଏ ଯମୁନାକୁ ବନ୍ଦୀ କର । ତା'ର ଆସ୍ପର୍ଦ୍ଧା କମ୍ ନୁହେଁ ।

(ପ୍ରହରୀ ଟିକିଏ ବିଚଳିତ ହୋଇ ନର୍ତ୍ତକୀ ପାଖକୁ ଯାଇ ତାକୁ ନିର୍ଦ୍ଦେଶ ଦେଲା )

ପ୍ରହରୀ—ତୁମେ ବନ୍ଦୀ···ସମ୍ରାଟଙ୍କର ଆଦେଶ, ଆସ କାରା କକ୍ଷକୁ ଆସ ।

ଶାହାଜାହାନ—( ଏକ ବିକଟାଳ ହସ ହସି ) ବାଃ···ବାଃ··· ଚମତ୍କାର···ଚମତ୍କାର ! ତୁମେ ବି ଆଜି ଏକ ଅଦ୍ଭୁତ ଜାନୁଆର ! ତୁମ ମୁଣ୍ଡ କ'ଣ ଖରାପ ହୋଇ ଯାଇଛି ? ନର୍ତ୍ତକୀ କ'ଣ ଯମୁନା ? ନର୍ତ୍ତକୀ···ଯମୁନା । ବାଃ ବାଃ କି ଚମତ୍କାର କବିକଳ୍ପନା ପ୍ରହରୀର ! ଏ କିଏ ଅଛରେ ? ନିଅ ତାକୁ ପାଗଳ ଗାରଦରେ ଭର୍ତ୍ତି କରିଦିଅ ।

ଦ୍ୱିତୀୟ ପ୍ରହରୀ—(ପ୍ରବେଶ କରି ଭୂମିଷ୍ଠ ପ୍ରଣାମ କରିବା ) ହଜୁର, ଖୋଦାବନ୍ଦ !

ଶାହାଜାହାନ—ହଁ···ଶୁଣ । ଏ ପ୍ରହରୀର ମୁଣ୍ଡ ଖରାପ ହୋଇ-ଯାଇଛି । ରାଜାଦେଶ କଣ ବୁଝିପାରୁନି । ତାକୁ ପାଗଳ-ଖାନାରେ ଭର୍ତ୍ତିକରି ବନ୍ଦୀ କର । ସେ ସେଇଠାରେ ବସି କବିତା ଲେଖିବ ।

ଶାହାଜାହାନ—(ଦ୍ୱିତୀୟ ପ୍ରହରୀକୁ ନିର୍ଦ୍ଦେଶ କରି) ନା···ନା··· ତାକୁ କ୍ଷମା ଦିଆଗଲା । ପ୍ରଥମ ଦୋଷପାଇଁ ସମ୍ରାଟ

ଶାହାଜାହାନଙ୍କ ଦରବାରରେ କେହି ଦଣ୍ଡଭୋଗ କରେନା । ସେ ପୁରସ୍କାର ପାଇଁ ଯୋଗ୍ୟ । ତାର କଳ୍ପନା···କବି ଆଉ କଳାକାରର କଳ୍ପନା । ଏ ନର୍ତ୍ତକୀ କ'ଣ ସୌନ୍ଦର୍ଯ୍ୟର ଯମୁନା ନୁହେଁ ? ତାର ନୟନରେ କ'ଣ ଯମୁନାର ନୀଳ ଲୁହାଣି ନାହିଁ । କୁହ···ଉଜୀରଙ୍କୁ କୁହ, ତାକୁ ଯଥାଯୋଗ୍ୟ ପୁରସ୍କାର ଦେବେ । (ଉଭୟ ହୃଦୟର ପ୍ରସ୍ଥାନ ପ୍ରଣାମ ସହ) ,

ନର୍ତ୍ତକୀ—ସମ୍ରାଟ ! ଅଭାଗିନୀର ଅପରାଧ ପାଇଁ କ୍ଷମା ଦିଅନ୍ତୁ ।

ଶାହାଜାହାନ—କ୍ଷମା ! ନିଶ୍ଚୟ କ୍ଷମା ମିଳିବ । ହଁ, ମୁଁ ଶୁଣିଛି, ସଙ୍ଗୀତ ଓ ନୃତ୍ୟର ଶକ୍ତି ଅସୀମ । ତା'ର ଭିତରେ ପ୍ରାଣ ହଜିଯାଏ । ମନୁଷ୍ୟ ଭାସିଯାଏ କଳ୍ପନାର କେଉଁ ଅନନ୍ତପୁରକୁ । ସେ ହୁଏ ସନ୍ନ୍ୟାସୀ । ଆଚ୍ଛା ନର୍ତ୍ତକୀ, ତୁମେ ଗୋଟିଏ କାମ କରିପାରିବ ?

ନର୍ତ୍ତକୀ—ଆଜ୍ଞା ଦିଅନ୍ତୁ ସମ୍ରାଟ ! ପ୍ରାଣ ବିନିମୟରେ ପାଳନ କରିବି ।

ଶାହାଜାହାନ—ତୁମେ ଜାଣ ନର୍ତ୍ତକୀ, ମମତାଜ ସମାଧି ମନ୍ଦିରକୁ ଗଲାଦିନଠାରୁ ମୋ ପ୍ରାଣ ମଧ୍ୟ ସମାଧିସ୍ଥ ହୋଇଛି ! ତୁମେ ସଙ୍ଗୀତ ଓ ନୃତ୍ୟର ତାଳେ ତାଳେ ମମତାଜର ଜୀବନ ସଞ୍ଚାର କରିପାରିବ ? ମୁଁ ପ୍ରତିଦିନ ବ୍ରାହ୍ମ ମୁହୂର୍ତ୍ତରେ ସେଠାକୁ ଯାଏ । ସୂର୍ଯ୍ୟ ଆଲୋକ ବୁଣିବା ପୂର୍ବରୁ ଫେରିଆସେ । ମୋ ସହିତ ଯିବ ନର୍ତ୍ତକୀ ?

ନର୍ତ୍ତକୀ—ନିର୍ଜନ ରାତ୍ରିର ଅନ୍ଧକାର ମଧ୍ୟରେ ସମ୍ରାଟ ଶାହାଜାହାନଙ୍କ ସହିତ ତାଙ୍କ ଚିତ୍ତବିନୋଦିନୀ ନର୍ତ୍ତକୀ ? ? ? ରାଜ୍ୟବାସୀ ଭଲ ଭାବିବେ ତ ମଣିମା ?

ଶାହାଜାହାନ—ସନ୍ଦେହ କରିବେ ? କାହିଁକି ?

ନର୍ତ୍ତକୀ—ସମ୍ରାଟ ! ନର୍ତ୍ତକୀର ସ୍ଥାନ ପ୍ରମୋଦ କକ୍ଷରେ । ରାଜପଥ ଉପରେ ନୁହେଁ ।

ଶାହାଜାହାନ—ଓଃ ତା'ହେଲେ ତୁମେ କହୁଛ, "ନର୍ତ୍ତକୀ ଷଡ଼ଯନ୍ତ୍ର କରିଛି ବୋଲି ଲୋକେ ସନ୍ଦେହ କରିବେ ?"

ନର୍ତ୍ତକୀ—ମହିମା···ତା ଯଦି ଜନତାର ବିଚାର ହୁଏ । ସମ୍ରାଟ, ପୁନର୍ବିଚାର କରନ୍ତୁ । ନୃତ୍ୟ ଆଉ ସଙ୍ଗୀତ କଣ ଜୀବନ ସଞ୍ଚାର କରିପାରିବ ?

ଶାହାଜାହାନ—ତେବେ ଶାସ୍ତ୍ର ପ୍ରମାଣ କ'ଣ ମିଥ୍ୟା ? ସଙ୍ଗୀତର ତାନରେ ଯଦି ଜୀବନ ସଞ୍ଚାର କରିବାର ଶକ୍ତି ନାହିଁ, ତେବେ ସେ ସାଧନା କରୁଥିଲି କାହିଁକି ? ନୃତ୍ୟର ଛନ୍ଦରେ ମୃତ୍ୟୁର ଗତିକୁ ଯଦି ବନ୍ଦ କରାଯାଇ ପାରିବ ନାହିଁ ତେବେ ଏ ନୃତ୍ୟର କି ଅର୍ଥ ଅଛି ? ସଙ୍ଗୀତରେ ଜୀବନ ଅଛି···ନିଶ୍ଚୟ ଅଛି । ପାରିବ ? ପାରିବ ନର୍ତ୍ତକୀ ?

ନର୍ତ୍ତକୀ—ହଁ ପାରିବ ଜହାଁପନା, ପାରିବ । ତା' ପୂର୍ବରୁ ସମ୍ରାଟଙ୍କୁ ଏକ ପ୍ରାର୍ଥନା ପୂରଣ କରିବାକୁ ପଡ଼ିବ ।

ଶାହାଜାହାନ—ମୋଗଲ ସାମ୍ରାଜ୍ୟର ସବୁ ବିଭବ ବିନିମୟରେ ନର୍ତ୍ତକୀର ପ୍ରାର୍ଥନା ପୂରଣ କରାଯାଇ ପାରିବ ।

ନର୍ତ୍ତକୀ—ହୁଜୁରଙ୍କର ଆନନ୍ଦହିଁ ନର୍ତ୍ତକୀର ଅମୂଲ୍ୟ ବିଭବ । ସେ ସମ୍ପତ୍ତି ଗୁହେଁନା···ସମ୍ମତି ଗୁହେଁ ।

ଶାହାଜାହାନ—ହଁ, ମୋର ସମ୍ମତିର ସ୍ୱୀକୃତ ଅଛି । ନିଃସଙ୍କୋଚରେ ପ୍ରକାଶ କର ।

ନର୍ତ୍ତକୀ—କବନ୍ଦୁ ମନ୍ଦିରର ଦେବଦାସୀ ପରି ଏ ନର୍ତ୍ତକୀ ପ୍ରତିଦିନ ଏହି ସମାଧି ମନ୍ଦିରରେ ନୃତ୍ୟ ସଙ୍ଗୀତ ପରିବେଷଣ କରିବ । ସଙ୍ଗୀତର ମୂର୍ଚ୍ଛନାରେ ଶିହରି ଉଠିବ ସେହି ମର୍ମର ଶିଳାଖଣ୍ଡ, ତା'ର ଭିତରୁ ଜୀବନ୍ୟାସ ନେଇ ଉଲ୍ଲସି ଉଠିବେ ମମତାଜ ମମତାଜ ।

ଶାହାଜାହାନ—ଠିକ୍ କହିଲ.....ଠିକ୍ କହିଲ ନର୍ତ୍ତକୀ । ତାଜମହଲର ପ୍ରତ୍ୟେକ ଶିଳାଖଣ୍ଡରେ ତୁମ ସଙ୍ଗୀତର ଝଙ୍କାରଣା ଚିରଦିନ ପାଇଁ ଝରିବ । ଯମୁନା ବୁକୁରେ ନିର୍ମାଣ ହେବ ଆଜି ଏକ ମହଲ, ତା' ହେବ ବିଶ୍ୱର ବିସ୍ମୟ । ତା'ର ତଳେ ବହିବ ଯମୁନା । ତୁମେ ସେଇ ମହଲରେ ରହି ସଙ୍ଗୀତର ଆରାଧନା କରିବ ନର୍ତ୍ତକୀ ! ଏତେ ତ୍ୟାଗ କ'ଣ କରିପାରିବ ନାରୀ ?

ନର୍ତ୍ତକୀ—ନାରୀ ତ କେବଳ ତ୍ୟାଗପାଇଁ ଜନ୍ମ । ସମ୍ରାଟଙ୍କ ଆନନ୍ଦ ପାଇଁ ଏ ତ୍ୟାଗ ଯଥେଷ୍ଟ ନୁହେଁ ।

ଶାହାଜାହାନ—ଆଜି ରାତି ଭିତରେ ମୋଗଲ ସମ୍ରାଟ ଶାହାଜାହାନଙ୍କ ଇଙ୍ଗିତରେ ନିର୍ମିତ ହେବ ସେହି ମହଲ । ରାତିର ଅନ୍ଧକାର ଭିତରେ ତୁମର ଅଭିଷେକ ହେବ ସେହି ମହଲର ସିଂହାସନରେ । ତାହା ନର୍ତ୍ତକୀ ମହଲ ନାମରେ ପରିଚିତ ହେବ ।

ନର୍ତ୍ତକୀ—ମହାମହିମ ସମ୍ରାଟ ଶାହାଜାହାନଙ୍କର ଜୟ ହେଉ ।

## ଦ୍ୱିତୀୟ ଦୃଶ୍ୟ

[ ରାତ୍ରିର ନିବିଡ଼ ଅନ୍ଧକାର । ଯମୁନାକୂଳରେ
ତାଜମହଲ ତାର ଶୁଭ୍ରଶିରୀ ହଜାଇ ଦେଇଛି ।
ସେହି କାଳିମା ମଧ୍ୟରେ ଦୁଇଟି ଛାୟାମୂର୍ତ୍ତି ।
ଗୋଟିଏ ନାରୀ......ଅନ୍ୟଟି ପୁରୁଷ । ଉଭୟଙ୍କର
କଥୋପକଥନ ଅସ୍ପଷ୍ଟ ନୁହେଁ । ]

ପ୍ରଥମ ଛାୟା—ନର୍ତ୍ତକୀ, ଚାଲ ଉପରକୁ ଯିବା ··· ତାଜମହଲ ଉପରକୁ ।

ଦ୍ୱିତୀୟ ଛାୟା—ଏ ଅନ୍ଧକାର ଭିତରେ !

ପ୍ରଥମ—ମଣିମୁକ୍ତାଖଚିତ ତାଜମହଲର ଊର୍ଦ୍ଧ୍ୱକୁ ଯିବାକୁ ସୂର୍ଯ୍ୟର ଆଲୋକ ଦରକାର ନାହିଁ । ଏହା କଳାର ଏକ ସୂର୍ଯ୍ୟ ।

ଦ୍ୱିତୀୟ—ସମ୍ରାଟଙ୍କର ଆଦେଶ ଶିରୋଧାର୍ଯ୍ୟ ।

ପ୍ରଥମ—ପାହାଚ ପାହାଚ ହୋଇ ନାଚ ନାଚ ଉପରକୁ ଯିବାକୁ ହେବ ।

ଦ୍ୱିତୀୟ—ତା' ପରେ ?

ପ୍ରଥମ—ତା'ପରେ ପହଞ୍ଚିବା ନର୍ତ୍ତକୀ ମହଲରେ ।

ଦ୍ୱିତୀୟ—ସେଠାରେ ?

ପ୍ରଥମ—ତମ ସଙ୍ଗୀତ ଅଭିଷେକରେ ମହଲ ପ୍ରତିଷ୍ଠା ହେବ ।
(ନାଚର ତାଳେ ତାଳେ ନୂପୁରର ଶବ୍ଦ ଶିହରି ଉଠିଲା)

ପ୍ରଥମ—ଦେଖିଲ ନର୍ତ୍ତକୀ, ତମରି ଏ ମହଲ କେଡ଼େ ମନୋରମ !

ଦ୍ୱିତୀୟ—ଅନ୍ଧକାର ଭିତରେ ମୁଁ କିଛି ଦେଖିପାରୁନି ସମ୍ରାଟ !

ପ୍ରଥମ—କଣ୍ଟ ଦେଖିପାରୁନ ? ହଁ, ଝଣିବ କପରି ? ତଳେ ନୀଳ ଯମୁନା, ଉପରେ ବି ନୀଳ ଆକାଶ, ମଝିରେ ଅନ୍ଧକାରର ଆବର୍ତ୍ତ । ମନେରଖ ନର୍ତ୍ତକୀ, ତା'ରି ଭିତରେ ଲୁଚିଯାଇଛି ସେଇ ମହଲର ମଣିମଣ୍ଡପ । ତୁମେ ସେଇଠାରେ ନର୍ତ୍ତନ କରିବ···ମନଭରି ନୃତ୍ୟ କରିବ ନର୍ତ୍ତକୀ ! ତମରି ପାଖରେ ସମ୍ରାଟର ଏତିକି ମାତ୍ର ଭିକ୍ଷା···ସଙ୍ଗୀତ ଭିତରେ ମମତାଜର୍ ଜୀବନକୁ ଫେରାଇ ଆଣିବ ଯମୁନାର ଶୀତଳ ସମାଧିରୁ । •

ଦ୍ୱିତୀୟ—ଜାହାଁପନା···ପ୍ରାଣ ଜନମପ୍ପରେ । ସଙ୍ଗୀତ ଯଦି ଜୀବନ ଦେଇପାରେ ତେବେ ଜାହାଁପନା ମିଳିବ । ଆଲ୍ଲା ଚାହିଁଲେ, ଅଭିଳାଷ ପୂର୍ଣ୍ଣ ହେବ ସମ୍ରାଟ !

ପ୍ରଥମ—ତମରି ଭିତରେ ଆଲ୍ଲାଙ୍କର ସେହି ମହାନ୍ କଳା ଅଛି ନର୍ତ୍ତକୀ । ଏଇ ନୀରୀକ୍ଷଣ କର, ନର୍ତ୍ତକୀ ମହଲର ମଣିଦର୍ପଣ ଯମୁନା ବୁକୁରେ ପ୍ରତିବିମ୍ବିତ ହେଉଛି ।

ଦ୍ୱିତୀୟ—ସମ୍ରାଟ, ମୁଁ କେବଳ ଶୁଣିପାରୁଛି ଯମୁନାର ବେଣୁ; ଦେଖିପାରୁଛି ଅନ୍ଧକାରର କୃଷ୍ଣଶାଢ଼ୀ । କ୍ଷମା କରନ୍ତୁ ମହିମା, ଅପେକ୍ଷା କରନ୍ତୁ, ଆଲୋକର ଉତ୍ସବ ଭିତରେ ସଙ୍ଗୀତର ଅଭିଷେକ ହେଉ ।

ପ୍ରଥମ—ମାହେନ୍ଦ୍ର ମୁହୂର୍ତ୍ତ କାହାରିକୁ ଅପେକ୍ଷା କରେନା । ପ୍ରସ୍ତୁତ ହୁଅ ।

( ହଠାତ୍ ଖୁବ୍ ଜୋରରେ ଯମୁନା ଜଳରେ କିଛି ଗୋଟାଏ ପଡ଼ିବାର ଶବ୍ଦ, ତା' ପରେ ସବୁ ଶୂନ୍‌ଶାନ୍ । କିଛି ସମୟ ପରେ ଅଦ୍ଭୁତ କଣ୍ଠରୁ ଶୁଣାଗଲା···"ବିଦାୟ ନର୍ତ୍ତକୀ" ।

## ତୃତୀୟ ଦୃଶ୍ୟ

[ ରାଜପଥ ଉପରେ ଦୁଇଜଣ ଲୋକ କଥାବାର୍ତ୍ତା
ହୋଇ ଆସୁଛନ୍ତି । ]

ପ୍ରଥମ—ବୁଝିଲୁ ଭାଇ, ଯାହା ଅବସ୍ଥା ହେଲାଣି ନା ପ୍ରାଣ ରହିବନି ।

ଦ୍ୱିତୀୟ—ଲୋକମାନେ ପୋକମାଛି ପରି ମଲେଣି । ଦେଶସାରା ଦୁର୍ଭିକ୍ଷ । ସମ୍ରାଟଙ୍କ ମୁଣ୍ଡ ତ ଆଉ ଠିକ୍ ନାହିଁ । ବେଗମ୍ ମମତାଜ ଗଲାଦିନୁ ସେ ଅର୍ଦ୍ଧପାଗଳ ।

ପ୍ରଥମ—( ଦ୍ୱିତୀୟର କାନ ପାଖକୁ ଲାଗିଆସି ) ଶୁଣିଲୁଣି ନା, ଗୋଟାଏ ଖାସ୍ ତାଜା ଖବର ।

ଦ୍ୱିତୀୟ—କ'ଣ କରେ ?

ପ୍ରଥମ—ସମ୍ରାଟଙ୍କ ସେଇ ଯୋଉ ନାଚବାଲି ମ, ରାଣୀ ଗଲାଦିନୁ ଯେ କି ଛାଇ ପରି ତାଙ୍କ ପାଖେ ପାଖେ ଥାଏ —

ଦ୍ୱିତୀୟ—ସେ କ'ଣ ଆଉ ଆରେକ ମମତାଜ ବନିଗଲା କି ?

ପ୍ରଥମ—ନାହିଁ ମ, ସବୁ ଦଫାରଫା ଶେଷ । ତା ଶବ ଆଜି ଯମୁନା ନଈରୁ ମିଳିଛି ।

ଦ୍ୱିତୀୟ—ଏଁ...କଣ କହିଲୁ ! କିଏ ତାକୁ ମାରିଲା କିଏ ? ସେ ଆଜି ଆତ୍ମହତ୍ୟା କରିନି ତ ?

ପ୍ରଥମ—କିଛି ଜଣା ପଡ଼ୁନି ଏ ଯାଏ । ସେ ନିଜେ ମରିଛି କି ତାକୁ କିଏ ମାରି ଦେଇଛି, କିଏ କହିବ ?

ଦ୍ୱିତୀୟ—ଏଁ କ'ଣ କହିଲୁ ! ସମ୍ରାଟ ଜାଣିଲେଣି ?

ପ୍ରଥମ—ସେ ମଲାନ ଯେ ସମସ୍ତଙ୍କୁ ମାରଦେଇ ଗଲା । ସତକେ ତ ସମ୍ରାଟଙ୍କର ମୁଣ୍ଡ ବଗିଡ଼ ଥିଲା, ଯାହାର ଟିକଏ ଥିଲା ସେତକ ବ ରହିବନ ।

ଦ୍ୱିତୀୟ—ଆରେ ହେ, ତଥାପି ଶୁଣାଶୁଣି କଣ ? ଲୋକେ କହୁଚନ୍ତି କ'ଣ ?

ପ୍ରଥମ—ଉପୂରେ ଲୋକଙ୍କ ପାଟି ବନ୍ଦ । ଖାଲି କଏ କୋଉଠି ଫୁସର ଫାସର ହେଉଛନ୍ତି ।

ଦ୍ୱିତୀୟ—କ'ଣ ଶୁଣେ ?

ପ୍ରଥମ—ଆଉ ଶୁଣିବୁ କଣ ? ସେ ତା ବାଟରେ ଗଲା, ତମେ ଦଲଟା ରହିଲ ଭୋଗିବାକୁ ।

ତୃତୀୟ—( ପ୍ରବେଶ ) ବାକ ଅଛୁ କ'ଣ ? ଦେଶସାରା ପଦ ଢେଙ୍ଗୁରା ହଅାଗଲାଣି । ନର୍ତ୍ତକୀକୁ ମାରବା ଲୋକର ଖବର ଯେ ଦେଇ ପାରବ, ତାକୁ ହଜାରେ ଅସରଫି ମିଳବ । ଆଜ ହନଟା ଦେଶସାରା ସମସ୍ତେ ତା ପାଇଁ ଶୋକ ପାଳବେ । ସମସ୍ତଙ୍କୁ ଓପାସ ରହିବାକୁ ପଡ଼ବ ।

ଦ୍ୱିତୀୟ—କି ଓ ସବୁଦନେ ତ ଓପାସରେ ପୋକ ମାଛି ପର ମରୁଛନ୍ତି । ଉପାସିଆ ଲୋକର ପୁଣି ଓପାସ କଣ ?

ପ୍ରଥମ—ସତରେ ଭାଇ, ଲୋକେ ଖାଇବା ବନା ମଲା ବେଳକୁ ମହଲ ଉପରେ ମହଲ ତିଆର ଚାଲିଛୁ । ଲୋକ ଅସନ୍ତୋଷର

କଣ କହୁ ଫଳ ନାହିଁ ? କଥାରେ ଅଛି "ସବୁର ଭୁଣ୍ଡେ ନାରପୂଣ" ।

ତୃତୀୟ—ଲୋକଙ୍କ ନିଶ୍ୱାସରେ ସବୁ ଜଳପୋଡ଼ି ଯିବରେ ସବୁ ଜଳପୋଡ଼ି ଯିବ । ଏ ସମ୍ରାଟଟା ଆଉ ବେଶି ଦିନ ନୁହେଁ ।

ପ୍ରଥମ—ହିଁ ମ, ଆଛା ଆଛା ରାଜପଣ ତ ଲୋକଙ୍କ ନିଶ୍ୱାସରେ ଜଳ ଯାଇଛି । ପୁଣି କେତେକର ! କୁରୁବଂଶ ଗଲା, କଂସର ଦରପ ଭୁଟିଲା, ରାବଣର ସୁବର୍ଣ୍ଣ ଲଙ୍କା ଛାରଖାର ହେଲା, ରହିଲା କ'ଣ ? ଲୋକେ ନିଜ ମାଉଁସ ନିଜେ ଖାଇଲେଣି, ତଥାପି ସମ୍ରାଟଙ୍କର ନିଦ ଭାଙ୍ଗୁନି । ତାଙ୍କ କାନରେ କ'ଣ କହୁ ଖବର ପହଞ୍ଚୁନି ?

ଦ୍ୱିତୀୟ—ଖବର ପହଞ୍ଚିବ କେମିତି ? ସମ୍ରାଟଙ୍କ ଉଆସକୁ ସୂର୍ଯ୍ୟ, ଚନ୍ଦ୍ର, ତାରା, ପାଣି, ପବନ କେହି ତ ପଶିପାରୁ ନାହାନ୍ତି । ଖବର ପଶିବ କିମିତି ? ହେଲେ ବୁଝିହେଉନି ସେ ମହଲ ଭିତରେ କଣ ସବୁ ହେଉଛି ।

ପ୍ରଥମ—ମୁଁ ଶୁଣିଥିଲି ସମ୍ରାଟ ନିଜର ସୂର୍ଯ୍ୟ, ଚନ୍ଦ୍ର, ତାରା ଖଞ୍ଜିଛନ୍ତି । ଯେତେବେଳେ ଇଚ୍ଛିଲେ ଦିନ ରାତି ହୋଇ ପାରିବ ।

ତୃତୀୟ—ଏ ବଡ଼ତି କେତେଦିନ ରହିବ ରେ ଭାଇ ! ଇନ୍ଦ୍ରପଦ ତ ରହିନି । ସବୁ ଜଳିଯିବ...ସବୁ ଧ୍ୱଂସ ହୋଇଯିବ ।

ଦ୍ୱିତୀୟ—ଚାଲ ପଳାଇବା । ହେଇ, କିଏ ଜଣେ ରାଜାଙ୍କ ଆଡ଼ର ଲୋକ ଏଇଆଡ଼େ ମୁହାଁଇଛି ।

## ଚତୁର୍ଥ ଦୃଶ୍ୟ

[ ରାତ୍ର ଅର୍ଦ୍ଧ, ସମ୍ରାଟ ଶାହାଜାହାନ ସୁପ୍ତ । ନୟନରେ ସ୍ୱପ୍ନର ପଟୁଆର । ନେପଥ୍ୟରୁ ଶୁଣାଗଲା ଜନ କୋଲାହଳ । ତାଙ୍କ ଆଖି ଆଗରେ ଏକ କଙ୍କାଳ । ମଞ୍ଚ ଛାୟାଭିଳା ଅନ୍ଧକାର । ]

ଶାହାଜାହାନ—କିଏ···କିଏ ? କିଏ ତୁ କଙ୍କାଳ, ତୁ ଏଠାକୁ ଆସିଲୁ କିପରି ? ତୋତେ ଅନୁମତି ଦେଲା କିଏ ? ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ଯାହାର ଦରବାରକୁ ଆସିବାକୁ ନିଷିଦ୍ଧ କରାଯାଇଛି, ସେଠାକୁ ତୋ ପରି ଏକ ବୃଦ୍ଧ କଙ୍କାଳ ଆସିଲା କିପରି ?

କଙ୍କାଳ—କେବଳ ପ୍ରଶ୍ନ ପରିବ ଖୁଲିଲେ କଣ ଉତ୍ତର ମିଳିଯାଏ ? ଧୈର୍ଯ୍ୟଧର···ଠିକ୍ ସମୟରେ ସବୁ ପ୍ରଶ୍ନର ଉତ୍ତର ପାଇବ । ହାଃ···ହାଃ···ହାଃ !!

ଶାହାଜାହାନ୍—ଏଁ, ତୋର ଏତେ ଆସ୍ପର୍ଦ୍ଧା ! ସମ୍ରାଟ ଶାହାଜାହାନଙ୍କୁ ଉପଦେଶ ଦେବାର ଧୃଷ୍ଟତା ! ପ୍ରହରୀ··· ପ୍ରହରୀ···ଏ କଙ୍କାଳକୁ ବନ୍ଦୀ କର ।

କଙ୍କାଳ—ଗର୍ଜନ କରି ତଣ୍ଟି ଫଟାଇ ଦେଲେ ବି ଏ ଡାକର କେହି ଶୁଣିବେନି ସମ୍ରାଟ । ତମର ଏଇ ବିଳାସ ମହଲକୁ ଧୂଳିରେ ମିଶାଇ ଦେବାର ଶକ୍ତି ଏ କଙ୍କାଳର ଅଛି । ତମ ଶିରରୁ ରାଜମୁକୁଟ ଉତ୍ତାରି ଆଣିବାର ଶକ୍ତି ନେଇ ଏ କଙ୍କାଳ ଆସିଛି । ତୁମକୁ ଲଜ୍ଜା ଲାଗୁନି, ଆମକୁ ଏଇପରି କଙ୍କାଳ କରାଇ ବିଳାସ ଶଯ୍ୟାରେ ସ୍ୱପ୍ନ ଦେଖୁଛ !

ଶାହାଜାହାନ୍—ଆରେ ପ୍ରହରୀ, ତମେ ସବୁ ଏତେବେଳେ ଗଲ କୁଆଡ଼େ ? ଆଜ ତମ କଲିଜାରୁ ଶୀଅନ୍ତା କାଢ଼ି ଆଣିବ । ତାଜା ରକ୍ତ ମିଶାଇ ସୁରାପାନ କରିବ ।

କଙ୍କାଳ—ହାଃ···ହାଃ···ହାଃ । ବୃଥା ଆସ୍ଫାଳନ । କୌଣସି ପ୍ରଜାର ହୃତ୍ପିଣ୍ଡରେ ରକ୍ତ ନାହିଁ ଶାହାଜାହାନ ! ତମେ ମନଭରି ସବୁ ପିଇଛ । ତମର ଏ ରାଜମହଲ···ସେ ତାଜମହଲରେ କୋଟି କୋଟି ପ୍ରଜାଙ୍କର ଲାଲ ତାଜା ରକ୍ତ ଚୂନପରି ବୋଳାଯାଇଛି । ଆଜ ସାରା ଦେଶରେ ମଡ଼ା ମଶାଣୀର ସ୍ତବ୍ଧତା । ଧିକ୍ ତୁମେ···ଧିକ୍ ତୁମ ରାଜପଣ, ଧିକ୍ ତୁମକୁ ଶ୍ମଶାନର ସମ୍ରାଟ । ହାଃ···ହାଃ···ହାଃ··· ।

(ହଠାତ୍ ମଞ୍ଚ ଆଲୋକିତ ହେଲା । ସମ୍ରାଟ ଶାହାଜାହାନଙ୍କ ସାରା ଶରୀର ଥରୁଛି । ହାତରେ ତାଙ୍କର ବନ୍ଧୁକ । ସେ କୋଠରୀ ସାରା ଘୂରି ବୁଲୁଛନ୍ତି ସେହି ବୃଦ୍ଧ କଙ୍କାଳର ଅନ୍ବେଷଣରେ)

ଶାହାଜାହାନ—କାଇଁ···କୁଆଡ଼େ ଗଲା ସେ କଙ୍କାଳ ? ତା'ର ପୁଣି ଏତେ ଆସ୍ପର୍ଦ୍ଧା, ମୋରଙ୍କ ପରି ଲୁଚିଗଲା କାହିଁକି ? ଏଁ···(ନ ପାଇ) ତେବେ କ'ଣ କେହି ଆସି ନ ଥିଲେ ! (ଥରହାତରେ ବନ୍ଧୁକ ରଖିଦେଇ) ମୁଁ ତେବେ କ'ଣ ସ୍ୱପ୍ନ ଦେଖୁଥିଲି ! ପ୍ରହରୀ···ପ୍ରହରୀ !

ପ୍ରହରୀ—ଶ୍ରୀଚରଣେ ପ୍ରଣାମ ମହିମା । (ପ୍ରଣାମ କରିବା)

ଶାହାଜାହାନ—ତୋତେ ପ୍ରାଣଦଣ୍ଡ ଦିଆଗଲା । କୁକୁର, ରାଜାନ୍ନରେ ପ୍ରତିପାଳିତ ହୋଇ ପୁଣି ବିଶ୍ୱାସଘାତକତା !

ପ୍ରହସ୍ତ—ମାପ୍ କରନ୍ତୁ ଜାହାଁପନା । ଏ ଅଧମ ସ୍ୱପ୍ନରେ ବି ବିଶ୍ୱାସଘାତକତାର ଚିନ୍ତା କେବେ କରିନି ।

ଶାହାଜାହାନ—କରିନୁ ? ? ସେ ବୃଦ୍ଧ କଙ୍କାଳକୁ ମୋ ପାଖକୁ ଛାଡ଼ିଲୁ କାହିଁକି ?

ପ୍ରହସ୍ତ—(ଆଶ୍ଚର୍ଯ୍ୟ ହୋଇ) ମହିମା, କେଉଁ କଙ୍କାଳ ? ମୁଁ ତ ଆଦୌ ଶୋଇନି । କେହି ତ ମହଲ ଭିତରକୁ ଆସି ନାହାନ୍ତି ; ମହିମାଙ୍କର ବିଶ୍ରାମ କକ୍ଷକୁ କେହି ଯାଇ ନାହାନ୍ତି ।

ଶାହାଜାହାନ—ସମ୍ରାଟ ତେବେ ତାଙ୍କର ଆଶ୍ରିତ ପ୍ରହସ୍ତ ପାଖରେ ମିଥ୍ୟା କହୁଛନ୍ତି ?

ପ୍ରହସ୍ତ—ମହିମା, ପ୍ରହସ୍ତ ତା ଅନ୍ନଦାତାର ସନ୍ଦେହ ଭିତରେ ରହିବା ଅପେକ୍ଷା ମୃତ୍ୟୁ ତା ପାଇଁ ସହସ୍ର ଗୁଣରେ ଭଲ । ଆଦେଶ ଦିଅନ୍ତୁ ସମ୍ରାଟ । ପ୍ରହସ୍ତ ମୃତ୍ୟୁଦଣ୍ଡ ଚାହେଁ । ସେ କହିବନି...ସେଇ ମୃତ୍ୟୁ କହିବ ଯେ ପ୍ରହସ୍ତ ବିଶ୍ୱାସଘାତକତା କରିନି । କେହି ମହଲ ଭିତରକୁ ପ୍ରବେଶ କରି ନାହାନ୍ତି ସମ୍ରାଟ ! (ଶିରପାତି ଦଣ୍ଡପାଇଁ ଅପେକ୍ଷା କରିବା)

ଶାହାଜାହାନ—ତେବେ କ'ଣ ମୋର ଚିତ୍ତ ବିଭ୍ରମ ଘଟିଛି ! ମୁଁ କ'ଣ ତେବେ ସ୍ୱପ୍ନ ଭିତରେ ସେ ବିକଟାଳ କଙ୍କାଳଟାକୁ ଦେଖିଲି ! ସ୍ପଷ୍ଟ ଭାବରେ ତା ସହିତ କଥାବାର୍ତ୍ତା କରିଛି । ସବୁ କ'ଣ ମିଛ । ଆଚ୍ଛା ପ୍ରହସ୍ତ, ତୁମେ ଦଣ୍ଡମୁକ୍ତ । ଯାଅ, ସତର୍କ ରୁହ । କେହି ଯେପରି ଏ ରାଜମହଲ ଭିତରକୁ ପ୍ରବେଶ ନ କରିବେ । ମାଛିଟାଏ ହେଲେ ବି ତାକୁ ଗୁଳିକରି ମାରିବାକୁ ସମ୍ରାଟଙ୍କର ଆଦେଶ ରହିଲା ।

ପ୍ରହସ୍ତ—(ମସ୍ତକ ଉତ୍ତୋଳନ କରି) ଯଥା ଆଜ୍ଞା ମହିମା ।

## ପଞ୍ଚମ ଦୃଶ୍ୟ

[ ସମ୍ରାଟ ଶାହାଜାହାନ ନିଦ୍ରାଭିଭୂତ । ପୁଣି ନୟନରେ ସ୍ୱପ୍ନର ଶିହାର । ସେଇ କଙ୍କାଳର ଆବିର୍ଭାବ । ମଞ୍ଚ ଅନ୍ଧକାର । ଟା'ରି ଭିତରେ ଛାୟାର ସଞ୍ଚରଣ । ]

କଙ୍କାଳ—ହାଃ···ହାଃ···ହାଃ···(ବିକଟାଳ ଚିତ୍କାର)

ଶାହାଜାହାନ—କିଏ ? ତୁ ସେ···ଇ···କ···ଙ୍କା···ଳ !! ପୁଣି ତୁ କିପରି ଆସିଲୁ ? ମରଣକୁ କଣ ଭୟ ନାହିଁ ?

କଙ୍କାଳ—ଯେ ନିଜେ ମୃତ୍ୟୁ ସେ ଆଉ କାହାକୁ ଭୟ କରିବ ?

ଶାହାଜାହାନ—ତୁମର ପରିଚୟ ଦେଇ ପାରିବ କଙ୍କାଳ ?

କଙ୍କାଳ—ମୋର ପୁଣି ଆଉ ବିଶେଷ ପରିଚୟ କ'ଣ ? କଙ୍କାଳ··· କଙ୍କାଳ, ତା'ର ପୁଣି ଗୋଟାଏ ପରିଚୟ ସେ ଭିନ୍ନ ଭାବରେ କ'ଣ ଦେବ ?

ଶାହାଜାହାନ—କୁହ···କୁହ କଙ୍କାଳ । ମୁଁ ଜାଣୁଛି ତୁମେ ସାମାନ୍ୟ ନୁହଁ । କୁହ ତୁମେ କିଏ ? କିପରି ଆସିଲ ? କାହିଁକି ଆସିଲ ?

କଙ୍କାଳ—ମୁଁ···ମୁଁ ତୁମର ପ୍ରଜା, ପ୍ରେତରେ ପରିଣତ ହୋଇଛି । ପ୍ରେତର ପ୍ରବେଶ ସବୁଠି ଅଛି କେବଳ ଧର୍ମପୀଠ ବ୍ୟତୀତ । ଏ ନର୍କପୁରୀକୁ କ'ଣ ଆସନ୍ତି ନି ?

ଶାହାଜାହାନ—ନର୍କପୁରୀ !

କଙ୍କାଳ—ହଁ, ନର୍କପୁରୀ ନୁହେ ତ ଆଉ କ'ଣ ? ଯେଉଁଠାରେ ସମ୍ରାଟ ସୁରା ନାରୀ ଭିତରେ ଦିନରାତି ବୁଡ଼ି ରହିଥାଏ,

ପ୍ରଜାମାନେ ଯେଉଁଠାରେ ପୋକ ମାଛିଠାରୁ ବି ହୀନ, ପ୍ରଜାର ତାଜା ଲାଲ ରକ୍ତରେ ଯେଉଁଠାରେ ସମ୍ରାଟଙ୍କର ରଙ୍ଗିନ୍‌ସୁରା ପ୍ରସ୍ତୁତ ହୁଏ, ତା’ କଣ ନର୍କପୁରୀ ନୁହେଁ ? ଦୁର୍ଭାଗ୍ୟ, ରାଜା ତା’ର ପ୍ରଜାକୁ ଚିହ୍ନି ପାରୁନ ।

ଶାହାଜାହାନ—ପ୍ରଜା ? ?

କଙ୍କାଳ—ହଁ…ହଁ…ପ୍ରଜା । ଏ କଙ୍କାଳ ସେହି ନିରନ୍ନ ମୃତ୍ୟୁମୁଖୀ ପ୍ରଜାମାନଙ୍କର ଆତ୍ମାର ପ୍ରତିନିଧି । ସମ୍ରାଟ ତାର ପ୍ରଜାମାନଙ୍କୁ ମୃତ୍ୟୁମୁଖକୁ ଠେଲି ଦେଇ ବିଳାସ ମହଲରେ ସ୍ୱପ୍ନ ଦେଖୁଛି । ପ୍ରଜାର ଜୀବନ ବନକୁ ନାଶ ପାଇଁ ଉଜାଡ଼ି ଦିଆ ଯାଇଛି । ଦେଶସାରା ଦୁର୍ଭିକ୍ଷର କରାଳ ଛାୟା ।

(ସାମାନ୍ୟ ଆଲୋକ ମଞ୍ଚ ବୁକୁରେ ପ୍ରବେଶ କରିବା )

ଶାହାଜାହାନ—ମୋର ପ୍ରଜାବୃନ୍ଦ ନିରନ୍ନ ? ଦେଶରେ ଦୁର୍ଭିକ୍ଷ ? ଲୋକେ ପୋକ ମାଛି ପରି ମରୁଛନ୍ତି ? ଏ ସମ୍ବାଦ ସମ୍ରାଟ ଶାହାଜାହାନଙ୍କୁ ଦିଆଯାଇ ନାହିଁ କାହିଁକି ? କିଏ ଏଥିପାଇଁ ଦାୟୀ ?

କଙ୍କାଳ—କେହି ନୁହେଁ । ଆପଣ ନିଜେ…ନିଜେ…। ଆପଣଙ୍କର ଖିଆଲ, ଆପଣଙ୍କର ଅଳୀକ ସ୍ୱପ୍ନ । ରାଶି ରାଶି ଶବସ୍ତୂପ ଉପରେ ଏ ତାଜମହଲ ଗଢ଼ିଚି । ତାଜମହଲରେ ଯେତୋଟି ମର୍ମର ଶିଳା ଖଞ୍ଜା ଯାଇଛି ସେ ସବୁ ଗୋଟିଏ ଗୋଟିଏ ପ୍ରଜାର ପ୍ରାଣଲିପି । ଲଜ୍ଜା ଲାଗୁନି ସମ୍ରାଟ । ମାଛିକୁ ବି ଶୂଳ କରିବାକୁ ଆଦେଶ ଦେଇଛନ୍ତି । ଏଇ ଦେଖନ୍ତୁ—ମୋ

ପଛରେ ଦେଶର ଅଗଣିତ ପ୍ରଜାପୁଞ୍ଜ କଙ୍କାଳ ରୂପରେ ପଡ଼ିଆର ବାଡ଼ିଛନ୍ତି । ଯାଅ ବଜ୍ରକରେ ଗୁଳଅଛୁ, ମନଭରି ଶିକାର କର । ରକ୍ତ ନଗାଡ଼ ପ୍ରାଣଭରି ସୁରାପାନ କର । ହାଃ···ହାଃ···ହାଃ···(କଙ୍କାଳର ପ୍ରସ୍ଥାନ, ମଞ୍ଚ ଆଲୋକତ, ସମ୍ରାଟ ସେଇ ପୂର୍ବ ଉତ୍ତେଜନାର ଉତ୍ତାପନେଇ ପୁଣି କହନ୍ତି)

ଶାହାଜାହାନ—କଙ୍କାଳ ! ତୁମେ ଚାଲିଗଲ କୁଆଡ଼େ ? ମୁଁ ମୋ ନିଷ୍ପତ୍ତିର ପରିବର୍ତ୍ତନ କରୁଛି । ଏ ରାଜପ୍ରାସାଦକୁ ଆସିବାକୁ ସମସ୍ତଙ୍କର ଅଧିକାର ଆଜିଠାରୁ ରହିଲା । ଏହାର ଦ୍ୱାର ଆଜିଠାରୁ ମୁକ୍ତ । ଆସ···ତମର ଏ ସର୍ବହରା ସମ୍ରାଟଟା ଉପରେ ଅଭିମାନ କରନା । (ମଞ୍ଚରେ ଆଲୋକର କ୍ଷୀଣ ଆଭାସ)

କଙ୍କାଳ—ମୁଁ ଅଭିମାନ କରିନା । ଅଭିମାନ କରିଛନ୍ତି ରାଜଲକ୍ଷ୍ମୀ । କୋଟି କଙ୍କାଳର ଆର୍ତ୍ତନାଦ ଭିତରେ ଯେ ସୁରାଭରା ପାତ୍ରରେ ବିହ୍ୱଳ ଚୁମ୍ବନ ଦେଇପାରେ, ସମ୍ରାଟ ହେବାର ଅଧିକାର ତା'ର ନାହିଁ । ପ୍ରିୟାର ସ୍ମୃତି ପାଇଁ ମନ ମଧ୍ୟରେ ପ୍ରଣୟର ତାଜମହଲ ଗଢ଼ାଯାଇ ପାରିଥାନ୍ତା । କୋଟି କୋଟି ଜନତାକୁ ମୃତ୍ୟୁମୁଖକୁ ଠେଲିଦେଇ, ରାଜକୋଷ ଶୂନ୍ୟ କରି ପ୍ରଜାର ସମ୍ପତ୍ତିରେ ଏ ଭଙ୍ଗୁର ଭଗ୍ନ ଶିଳା ଯୋଡ଼ିବାର କି ଆବଶ୍ୟକତା ଥିଲା ? ମୁଁ ଯାଉଛି । (ପ୍ରସ୍ଥାନ)

ଶାହାଜାହାନ—ଓଃ ଚାଲିଗଲ ! ସବୁତ ସରିଯାଇଛି କଙ୍କାଳ, ଏ ଶେଷ ମୁହୂର୍ତ୍ତରେ ଆସିଲ କାହିଁକି ? ସେତେବେଳେ କିଏ ଏଇ କଥା କହିବା ପାଇଁ ଆସି ପାରି ନ ଥାନ୍ତା ? ବରଂ କହେ ତାଜମହଲ କଳାର ଏକ ଅକ୍ଷୟ କୀର୍ତ୍ତି, ପ୍ରଣୟର ଭୂସ୍ୱର୍ଗ ।

ଏହାର ପରିଣତି କଣ ଏଇଆ ? କଙ୍କାଳ, ସତରେ ସମ୍ରାଟ ହେବାର ଅଧିକାର ମୋର ନାହିଁ ? ତାଜମହଲର ଶୁଭ୍ର ଶିଳାଖଣ୍ଡ ତଳେ କୋଟି କଳଙ୍କର କୃଷ୍ଣରେଖା ଲୁଚି ରହିଛି । କଙ୍କାଳ, ଆଜ କଣ୍ଠଧନ ପୂର୍ବରୁ ଅନ୍ତତଃ ଆସିଥିଲେ ପ୍ରଣୟ-ନଶାର ଧାପ ଲଭିପିବା ପୂର୍ବରୁ ଆଉ ଏକ କଳଙ୍କର ଅଧ୍ୟାୟ ସୃଷ୍ଟି ହୋଇ ନ ଥାନ୍ତା । ତୁମେ କ'ଣ କ୍ଷମା ଦେଇ ପାରିବ ଏଇ ନର୍କର କୀଟକୁ ନର୍ତ୍ତକୀ ? ତାଜମହଲ ବୁକୁରେ ପ୍ରଣୟର ସଙ୍ଗୀତ ନ ବାଜି କଳଙ୍କର କରୁଣ ମୂର୍ଚ୍ଛନା ତୋଳିବ ଆଗାମୀ ବଂଶଧରମାନଙ୍କ ପାଇଁ । —ମଞ୍ଚ ଅନ୍ଧକାର—

## ଷଷ୍ଠ ଦୃଶ୍ୟ

[ରାତ୍ରିର ଶେଷ ପ୍ରହର, ଶାହାଜାହାନ ପୁଣି ନିଦ୍ରାଭିଭୂତ । ପୁଣି ନୟନରେ ସ୍ୱପ୍ନର ପଟୁଆର । ସେଇ କଙ୍କାଳ......]

କଙ୍କାଳ—ହାଃ···ହାଃ···ହାଃ !!!

ଶାହାଜାହାନ—ଓଃ···ତୁମେ ପୁଣି ଆସିଛ କଙ୍କାଳ ! ମୋର ପ୍ରଣାମ ନିଅ । ଠିକ୍ ସମୟରେ ଆସିଛ । ଆଶୀର୍ବାଦ ଦିଅ ଏଇ କଳଙ୍କକୁ । ଶାହାଜାହାନ ପ୍ରସ୍ତୁତ ଅଛି ତା ଜୀବନ ବିନିମୟରେ ପ୍ରଜାଙ୍କ ପାଇଁ ସବୁକିଛି କରିବାକୁ, ନିର୍ଦ୍ଦେଶ ଦିଅ । କଙ୍କାଳର ଦରବାରରେ ସମ୍ରାଟର ବିଚାର ହେଉ । ସେ ଶାସ୍ତି ମାଗି ନେଉଛି ଜନତା ଠାରୁ···ଦେଇ ପାରିବ ?

କଙ୍କାଳ—(ଆଶୀର୍ବାଦର ହସ୍ତ ପ୍ରସାରଣ କରି) ପ୍ରଜାମାନଙ୍କର ପୀଡ଼ିତ ଆତ୍ମାର ପ୍ରତିନିଧି ଭାବରେ ମୁଁ ଆଶୀର୍ବାଦ ଦେଉଛି

ସମ୍ରାଟ । ଅନୁତାପ ଆପଣଙ୍କ ସମସ୍ତ କଳଙ୍କ ଧୋଇ ଦେଇଛି । ନିଅନ୍ତୁ, ଏଇ ନିକିତିଟିକୁ ଗ୍ରହଣ କରନ୍ତୁ । ସିଂହାସନ ସମ୍ମୁଖରେ ଏହା ସର୍ବଦା ରହିବ । ଏହା ହେବ ଆପଣଙ୍କର ପ୍ରକୃତ ସହାୟକ ରାଜଧର୍ମ ପାଳନ ପାଇଁ ।

ଶାହାଜାହାନ—କିପରି ?

କଙ୍କାଳ—କହୁଛି, ନିକିତି···ମାନଦଣ୍ଡ ! ଭଲ ମନ୍ଦ, ପାପ ପୁଣ୍ୟ, କର୍ମ ଅକର୍ମ ସବୁ ତଉଲି କରି କହିଦେଇ ପାରିବ ଏ ନିକିତି । ଏହାର ଗୋଟିଏ ପାଖରେ ରଖିବ ରାଜାର ଜୀବନ ଅନ୍ୟ ପାଖରେ ପ୍ରଜାର ଜୀବନ । କୌଣସି ପାଖ ଅଳ୍ପ ବହୁତ ଯେପରି ନ ହୁଏ । ଏତିକ କରିପାରିଲେ, ଏ ଦେଶରେ ପ୍ରାଣର ଫସଲ ହସି ଉଠିବ ସମ୍ରାଟ ! ନିଅନ୍ତୁ···ଗ୍ରହଣ କରନ୍ତୁ ଏ ନିକିତିଟି । (ପ୍ରସ୍ଥାନ)

ଶାହାଜାହାନ—(ହାତ ଉଠାଇ ଗ୍ରହଣ କରିବା ବେଳେ, ମଞ୍ଚ ଆଲୋକିତ ହୋଇ ଉଠିବା) ହାଃ···ହାଃ···ହାଃ···କୋଟିନିଧି ମିଳିଛି ସର୍ବହରାକୁ । ଆଜିଠାରୁ ଏହା ସିଂହାସନର ସମ୍ମୁଖରେ ନ ରହି ବରଂ ସିଂହାସନରେ ହେବ ନିକିତିର ଅଭିଷେକ । ସିଂହାସନ ପାଇଁ ମୁଁ ଯୋଗ୍ୟ ନୁହେଁ । ଏଇ ନିକିତି ରାଜ୍ୟ ଶାସନ କରିବ । ମୁଁ ଆଜିଠାରୁ ତଉଲିବି ଗୋଟିଏ ପାଖରେ ତାଜମହଲ, ଆର ପାଖରେ ଶାହାଜାହାନର କଳଙ୍କ । ହାଃ···ହାଃ··· (ନେପଥ୍ୟରୁ ଶୁଣାଗଲା) "ଶାହାଜାହାନଙ୍କର ଜୟ" ।

# ସାଧୁ

## ପ୍ରଥମ ଦୃଶ୍ୟ

[ ଗୋଟିଏ ରେଲଗାଡ଼ିର ଦ୍ୱିତୀୟ ଶ୍ରେଣୀ ଡବା, ସେଥିରେ ବସିଛନ୍ତି କେତେଜଣ ଯାତ୍ରୀ. କେତେକ କଥାବାର୍ତ୍ତାରେ ମଗ୍ନ ଆଉ କେତେକ ଘୁମାଉଛନ୍ତି ତନ୍ଦ୍ରିଳ ପରିବେଶ ମଧ୍ୟରେ । ଏତିକିବେଳେ ଜଣେ ସାଧୁ ଧ୍ୟାନମଗ୍ନ । ମଝିରେ ମଝିରେ ଅତି ସତର୍କତାର ସହ ଏଣେ ତେଣେ ଆଖି ବୁଲାଇଆଣି ନିଜର ପୃଥୁଳ ଉଦରରେ ହାତ ବୁଲାଇ ଆଣୁଛନ୍ତି । ପରିଧାନ ଗୈରିକ ବସ୍ତ୍ର, ପାଖରେ କମଣ୍ଡଳୁ । ମୃଗଚର୍ମ ଉପରେ ତାଙ୍କର ଆସନ । ନିକଟରେ ଥୁଆ ହୋଇଛି ଆଶା ବାଡ଼ି । ମଝିରେ ମଝିରେ କଣ୍ଠରୁ ନିର୍ଗତ ହେଉଛି "ଶିବ ଶମ୍ଭୁ............ ଶିବ ଶମ୍ଭୁ ।" ]

ପ୍ରଥମ ଯାତ୍ରୀ—ବାଃ···ବାଃ ··ସାଧୁ ବିଲ୍‌କୁଲ୍ ତନ୍ମୟ । ବନ୍ଧୁ, ପ୍ରେମରେ ତନ୍ମୟ ।

ଦ୍ୱିତୀୟ ଯାତ୍ରୀ—ହିଁ, ଆଉ କହିବାକୁ ଅଛି, ପ୍ରେମର ଗଙ୍ଗା ତ ବହୁଛି । ହେ ଦେଖିଲଣି, ସାଧୁଟା ତ ସେତେ ମୋଟା ନୁହେଁ । ତା' ପେଟଟା କ'ଣ ଏଡ଼େ ବଡ଼ । ବାବାଜିଙ୍କୁ ଜଳୋଦର ହୋଇନ ତ ?

ସାଧୁ—ହଂ···ହଂ···ଶିବଶମ୍ଭୁ । ଶିବଶମ୍ଭୁ ।

(କିଛି ସମୟ ପାଇଁ ସାଧୁଙ୍କର ତୀକ୍ଷ୍ଣ ଦୃଷ୍ଟି ତବା ମଧ୍ୟରେ ଖେଳିଗଲା ଓ ଆଲୋଚନା ବନ୍ଦ ହୋଇଗଲା)

ଦ୍ୱିତୀୟ ଯାତ୍ରୀ—ସାଧୁ କ'ଣ ଖାଲି କଡ଼ମଡ଼ କରି ଆମ୍ଭଆଡ଼େ ଚାହୁଁଛନ୍ତି, କ'ଣ କିଛି ହେଲାକି ?

ପ୍ରଥମ ଯାତ୍ରୀ—ହେଃ·····ହେଃ·····ହବ ଆଉ କ'ଣ ? ବାବା ଦେଖୁଛନ୍ତି ଶିବଶମ୍ଭୁ ତବା ଭିତରକୁ ଆସିଲେଣି ନା ନାହିଁ ।

ଚତୁର୍ଥ ଯାତ୍ରୀ—ଛି···ଏ ସବୁ କ'ଣ ? ଆପଣମାନେ ଯେତେହେଲେ ଯୁବକ ଲୋକ । ବଡ଼ମାନଙ୍କୁ ଇମିତି କ'ଣ ଟାହିଲା କରନ୍ତି ? ସେ ତ ସାଧୁ ଲୋକ, ସେବା ପୂଜାରେ ବସିଛନ୍ତି, ତାଙ୍କ ଉପରେ ଏତେ ଆଲୋଚନା କାହିଁକି ?

ଦ୍ୱିତୀୟ ଯାତ୍ରୀ—କଁଓ ବାବୁ ! ତମକୁ କାହିଁକ ଏତେ ବାଧୁଛି ? ତମେ କ'ଣ ତାଙ୍କ ଚେଲାମଣ୍ଟଣା ଚେଲା କି ? କାଇଁତ ଦିଶ, ଦାଢ଼ି କିଛି ନାହିଁ ।

ଚତୁର୍ଥ—ଧ୍ୟା ନା ଗୋଟାଏ କଥା ? ଦୁନିଆରେ ସମସ୍ତେ ଭଲକୁ ମନ୍ଦକୁ ପଦେ କହନ୍ତି । ତମେ ଯିମିତି ଆମେ ବି ସିମିତି । ଚେଲା ନ ହେଲେ କି କ'ଣ କିଛି ଅଧିକାର ନାହିଁ ?

ପ୍ରଥମ—ନାହିଁ କାହିଁକି, ବଧିମତ ଅଛି । ହେଲେ ଭାଇନା, ଆମେ ସବୁ ବାବାଜିଙ୍କର ନାତି ପରି । ଅଜା ବୟସର ଲୋକଙ୍କୁ ଦେଖିଲେ ନାତିଏ ଇମିତି ଟିକିଏ ମଜା କରନ୍ତି । ତମେ ରାଗିଗଲ କି ?

ଦ୍ୱିତୀୟ ଯାତ୍ରୀ—ହଁ ମ, ସାଇନା ଲାଗିବେ କାହିଁକି ? ବଡ଼ଲୋକ ବୋଲି ପଦେ ତଥାପି ଥିଲେ । ଶାସ୍ତ୍ରରେ ଅଛି ପଦ :

"ନାତିଏ ହେଲେ ଘେଣ୍ଟାଘେଣ୍ଟି,
ଉଡ଼େ ଅଜାଙ୍କ ଚୁଟି ପିଠି ।
ଉପୁଡ଼େ ନଣ ଦାଢ଼ି ସବୁ,
ତକା ଗୁଡ଼ନ୍ତି ରଖ ପ୍ରଭୁ ।"

ସମସ୍ତେ ହସିଉଠିଲେ । ଏତିକିବେଳେ ସାଧୁ ଅତି ସତର୍କତାର ସହିତ ଚତୁର୍ଦ୍ଦିଗକୁ ଚାହିଁ ସ୍ଥାନ ତ୍ୟାଗ କରିବାକୁ ଉଦ୍ୟତ ହେଲେ ।

ସାଧୁ—ବଂ...ବଂ...ବୋମ୍ବୋ...ଶିବଶମ୍ଭୁ ।

ଚତୁର୍ଥ ଯାତ୍ରୀ—ବାବା, ଆପଣ ଉଠିଲେ କାହିଁକି ? ବାବୁମାନେ ପିଲାଲୋକ, ତାଙ୍କ କଥା କ'ଣ ଘେନା କଲେ କି ?

ଦ୍ୱିତୀୟ ଯାତ୍ରୀ—ନାହିଁ ମ, ଆମେ ସବୁ ଇମିତି କ'ଣ କହିଲୁ ଯେ ସେ କଥା ଘିନବେ ! ଆଚ୍ଛା କହିଲ, ଯେତେ ସାଧୁ ହେଲେ ବି ତ ସେ ମଣିଷ । କେତେ ସମୟ ଆଖିବୁଜି ଅଣ୍ଟା ପିଠି ସିଧାକରି ବସିବେ ?

ସାଧୁ—ଜତେ ରହୋ ବାବା, ଜତେ ରହୋ ।

(ସମସ୍ତେ ବାବାଙ୍କର ମୁଖମଣ୍ଡଳକୁ ଚାହିଁଲେ)

ପ୍ରଥମ ଯାତ୍ରୀ—ବୈଠିଏ ସାଧୁଜୀ, ଆପ୍ କାହାଁ ଯାଏଗା ?

ଦ୍ୱିତୀୟ ଯାତ୍ରୀ—ଯା ହେଉ, ସାଧୁ ଓଡ଼ିଆ ବୁଝନ୍ତି । ଆମ କଥା ବୁଝିପାରି ନ ଥିବେ । କ'ଣ ହିନ୍ଦିରେ କଲ୍ୟାଣ କଲେ !

ତୃତୀୟ ଯାତ୍ରୀ—ସାଧୁଜୀ, ବୈଠଏ ଆପ୍ ବୈଠିଏ । ଯାଏଙ୍ଗେ କାହାଁ ? ଆରେ ଗୋଲମାଲ୍ ବନ୍ଦ କରୋ । ସାଧୁଜୀକା ଧ୍ୟାନ-ଭଙ୍ଗ ହୋଗୟା ।

ସାଧୁ—ବଂ...ବଂ...ଶିବଶମ୍ଭୁ...ଶିବଶମ୍ଭୁ...ଶିବଶମ୍ଭୁ ।
(ଏତକବେଳେ ମଞ୍ଚ ଅନ୍ଧକାର ହେଲା ।)

## ଦ୍ୱିତୀୟ ଦୃଶ୍ୟ

[ ସେଇ ରେଲଡ଼ବା, ଯାତ୍ରୀମାନଙ୍କ ମଧ୍ୟରେ ଅଧିକାଂଶ ସୁପ୍ତ, କିନ୍ତୁ ସାଧୁ ଧ୍ୟାନମଗ୍ନ । ମଂଚ ଆଲୋକିତ ହେଲାବେଳକୁ ଦେଖାଗଲା ଜଣେ ଟି.ଟି.ଆଇ. ଡବା ମଧ୍ୟକୁ ପ୍ରବେଶ କରିଛନ୍ତି । ତାଙ୍କୁ ଦେଖିଲାକ୍ଷଣି ସାଧୁଙ୍କର ଧ୍ୟାନଧାରଣା ଅତିମାତ୍ରାରେ ବଢ଼ିଯାଇଛି । ମଝିରେ ମଝିରେ ଅତି ସତର୍କତା ଭିତରେ ସେ ଟି.ଟି.ଆଇଙ୍କ ଆଡ଼େ ଚାହିଁଦେଇ ପୁଣି ଆଖି ବୁଜୁଛନ୍ତି ]

ଟି.ଟି.ଆଇ—ଟିକେଟ୍...ଟିକେଟ୍...ଟିକେଟ୍ ।
(ସମସ୍ତେ ନୀରବ...କାହାରି ଭିତରେ କିଛି ପ୍ରତିକ୍ରିୟା ନାହିଁ)
ଟିକେଟ୍ ପ୍ଲିଜ । (ଠକ୍ ଠକ୍ କରି) ଓ ବାବୁ, ଟିକେଟ୍ ।

ପ୍ରଥମ ଯାତ୍ରୀ—(ଆଖି ଖୋଲି ଏଣେ ତେଣେ ଖୋଜାଖୋଜି କରି ଟିକେଟ୍ ବାହାରକରି ଟି.ଟି.ଆଇଙ୍କ ହାତକୁ ଦେବା ) ଏଇ ନିଅନ୍ତୁ ।

ଟି.ଟି.ଆଇ—(ଦ୍ୱିତୀୟ ଯାତ୍ରୀଙ୍କୁ ନିର୍ଦ୍ଦେଶ କରି) ଓ ବାବୁ ! ଶୋଇଲ କଣ ? ଟିକେଟ୍ ଦିଅ ।

ଦ୍ୱିତୀୟ ଯାତ୍ରୀ—(ଆଖି ମଳ ମଳ ପୁଣି ବନ୍ଦ କରିବା) ଆରେ ଛୁଡ଼, ଖାଲି ଟିକେଟ୍···ଟିକେଟ୍ ।

ଟି.ଟି.ଆଇ—ବଡ଼ ଅଦ୍ଭୁତ ଲୋକ ! ବାବୁଙ୍କର ବୋଧହୁଏ ନିଦ୍ରା ଭଙ୍ଗ ହୋଇଗଲା ।

ଦ୍ୱିତୀୟ ଯାତ୍ରୀ—ମୁଁ ଟିକେଟ୍ କରିଛି । ବିନା ଟିକେଟ୍‌ରେ ଯାଉନି ଯେ ଡରେଇବ । ଯାଅ···ବୁଲିକରି ଆସ, ଦଉଛି ।

ଟି.ଟି.ଆଇ—ଏଁ, ବୁଲିକରି ଆସିବି ? ଟିକେଟ୍ ଦେଖାଇବ ନା ନାହିଁ ?

ଦ୍ୱିତୀୟ ଯାତ୍ରୀ—( ଖୁବ୍ ବିରକ୍ତ ହୋଇ ) ନ ହେଲେ ଫାଶି ମିଳିଯିବ ! ହେଇ ନିଅ ।

ଟି.ଟି.ଆଇ—ଓ ବାବୁ, ଟିକେଟ୍, ଟିକେଟ୍ ପ୍ଲିଜ ।

ତୃତୀୟ ଯାତ୍ରୀ—ଆପଣ ଏତିକ ବେଳକୁ ଆସି ଡିଷ୍ଟର୍ବ କଲେ ?

ଟି.ଟି.ଆଇ—କ'ଣ କିଛି ବିଶେଷ କାମରେ ବ୍ୟସ୍ତ ଥିଲେ କି ? କିଛି ମନେ କରନ୍ତୁନି, ଟିକେଟ୍ ପ୍ଲିଜ ।

ତୃତୀୟ ଯାତ୍ରୀ—ଆପଣ କ'ଣ ସେଇ ପଦକ କଥା ବ୍ୟତୀତ ଆଉ କିଛି ଶିଖି ନାହାନ୍ତି ?

ଟି.ଟି.ଆଇ—ଟି.ଟି.ଆଇ ଠାରୁ ଆପଣ କଣ ଭାଷଣ ଶୁଣିବାକୁ ଚାହାନ୍ତି ? ଟିକେଟ୍‌ଟା ଦେଇ ଦିଅନ୍ତୁ ଆଗେ ।

ତୃତୀୟ ଯାତ୍ରୀ—ଆଚ୍ଛା···ଆଚ୍ଛା, ଦେଉଛି···ଏଇ ନିଅନ୍ତୁ ।

ଚତୁର୍ଥ ଯାତ୍ରୀ—ବାବୁ ଟିକଏ ଶୁଣିବେ କି ?

ଟି.ଟି.ଆଇ—ହଁ, କ'ଣ କହନ୍ତୁ । ଟିକେଟ୍ ଅଛି ନା ?

ଚତୁର୍ଥ ଯାତ୍ରୀ—ହଁ, ଟିକେଟ୍ କରିଛୁ, ତେବେ ସେଟା ଆର ଡବାରେ ମୋର ଜଣେ ସାଥି ପାଖରେ ରହିଯାଇଛି । ଆପଣ କହିଁଥାନ୍ତୁ, ମୁଁ ଆଣିପିଛୁଳାକେ ନେଇ ଆସୁଛି ।

ଟି.ଟି.ଆଇ—ଥାଉ ଥାଉ, ଯିବା ଦରକାର ନାହିଁ । ତମେ ଏଠେ ବସ, ମୁଁ ତାର ବ୍ୟବସ୍ଥା କରିବି ।

ଚତୁର୍ଥ ଯାତ୍ରୀ—ଚଟ୍‌କରି ତ ଆଣି ପକେଇଥାନ୍ତି, ନାହିଁ କଲେ କାହିଁକି ?

ଟି.ଟି.ଆଇ—କହିଲି ବସ । ବକ୍ ବକ୍ କାହିଁକି ? ହଁ ସାଧୁଜୀ, ଟିକେଟ !

ସାଧୁ—(ସେଇପରି ଧ୍ୟାନମଗ୍ନ, ମଝିରେ ମଝିରେ ଦୀର୍ଘଶ୍ୱାସ ତ୍ୟାଗ କରିବା । ପାଟିରୁ ବାହାରୁଛି) ହଂ···ହଂ···ଶିବଶମ୍ଭୁ··· ଶିବଶମ୍ଭୁ ।

ଟି.ଟି.ଆଇ—ଆରେ ବାବା, ଟିକେଟ ଆଗେ ଦିଅ । ତା' ପରେ ଶିବଙ୍କୁ ଡାକିବ କି କୃଷ୍ଣଙ୍କୁ ଡାକିବ । ଦିଅ, ଟିକେଟ ଦିଅ ।

ସାଧୁ—(ଧ୍ୟାନମଗ୍ନ)

ଟି.ଟି.ଆଇ—କ'ଣ ଦେବନି ? ଟିକେଟ ଦେବ ନା ନାହିଁ ?

ସାଧୁ—ଉଁ···କ'ଣ କହିଲ ?

ଟି.ଟି.ଆଇ—କହିଲି, ଟିକେଟ···ଟିକେଟ ।

ସାଧୁ—ଟି···କେ···ଟ ? କି ଟିକେଟ ? ?

ଟି.ଟି.ଆଇ—ଟିକେଟ କଣ ଜାଣିନ ? ତା ହେଲେ ବିନା ଟିକେଟରେ ଗାଡ଼ିରେ ବସିଛ, ନୁହେଁ ?

ସାଧୁ—ଆଜ୍ଞା ଲୋକ ତମେ ଟି.ଟି.ଆଇ ବାବୁ । ସାଧୁସନ୍ଥ, ସନ୍ନ୍ୟାସୀମାନଙ୍କ ପାଇଁ ବି ଟିକେଟ !

ଟି.ଟି.ଆଇ—ହଁ ହଁ, ଟିକେଟ ସମସ୍ତଙ୍କୁ କରିବାକୁ ପଡ଼ିବ । କାହାକୁ ଛାଡ଼ ନାହିଁ ।

ସାଧୁ—କଣ କହିଲ, ଛାଡ଼ ନାହିଁ ? ମୁଁ କାଶୀ, ବୃନ୍ଦାବନ, ମଥୁରା, ଚତୁର୍ଦ୍ଧାମ ବୁଲି ଆସିଲଣି କେହି ତ କେବେ ଟିକେଟ ମାଗନ୍ତିନି । ତୁମେ ଆଜ କଣ ଟିକେଟ ମାଗୁଛ ?

ଟି.ଟି.ଆଇ—ତା' ହେଲେ ତ ତମେ ସମସ୍ତଙ୍କ ଆଖିରେ ଧୂଳି ପକାଇଛ । ତମକୁ ସମୂଳସୁଧ ଦେବାକୁ ହେବ । ମୁଁ ଛାଡ଼ିବିନି । ତୁମେ ସମସ୍ତଙ୍କୁ ଠକିଛ, ମୋତେ ପାରିବନି ।

ସାଧୁ—ମୁଁ ଠକିଛି ନା ସେମାନେ ଭକ୍ତିରେ ଛାଡ଼ ଦେଇଛନ୍ତି ? ତମର କଣ ସାଧୁ ସନ୍ନ୍ୟାସୀଙ୍କ ଠାରେ ଭକ୍ତି ନାହିଁ ?

ଟି.ଟି.ଆଇ—ଅଛି, ପୂରାମାତ୍ରାରେ ଅଛି ।

ସାଧୁ—ତମର କଣ ଈଶ୍ୱର ବିଶ୍ୱାସ ନାହିଁ ?

ଟି.ଟି.ଆଇ—ଅଛି, ନାହିଁ କାହିଁକି ? ତେବେ ମୁଁ ଯେଉଁ ଈଶ୍ୱରଙ୍କୁ ବିଶ୍ୱାସ କରେ, ସେ କେବଳ ସାଧୁଙ୍କର ଦଖଲରେ ନଥାନ୍ତି ।

ସାଧୁ—ସେଇକଥା କହୁନା, ତମର ଧର୍ମ ବିଶ୍ୱାସ ନାହିଁ । ନାସ୍ତିକ ଲୋକ ହୋଇ ନ ଥିଲେ ସାଧୁସନ୍ଥଙ୍କୁ ଇମିତି ହଇରାଣ କରନ୍ତିନି ।

ଟି.ଟି.ଆଇ—ମିମିଛ ବକ୍ ବକ୍ ହୁଅନ । ଟିକେଟ ଦେବ ତ ଦିଅ, ନ ହେଲେ ତମ ଆସ୍ତିକପଣିଆ, ଧର୍ମ ଫର୍ମ ସବୁ ବାହାର କରିଦେବ ।

ସାଧୁ—(ଦୀର୍ଘନିଶ୍ୱାସ ପକାଇ) ବଂ...ବଂ ଶିବଶମ୍ଭୁ...ଶିବଶମ୍ଭୁ ।

ଚତୁର୍ଥ ଯାତ୍ରୀ—ବାବୁ, ସେ ବାବାଜଟାକୁ ଛାଡ଼ । କାହିଁକି ତା ସାଥିରେ ଧକ୍‌ମିକି ଲଗେଇଚ ? ସବୁଦିନେ ସବୁକାଳେ ସାଧୁ, ସନ୍ନ୍ୟାସୀ, ଭିଖାରୀମାନଙ୍କୁ ଛାଡ଼ ଅଛି । ତମେ କ'ଣ ଆଜି ବଦଳେଇ ଦେବ ?

( ଏତିକିବେଳେ ସାଧୁ ତାଙ୍କ ଉଦର ଉପରେ ଗଭୀର ସତର୍କତାର ସହିତ ହାତ ବୁଲାଇ ଆଣିବା ଓ ଟି.ଟି.ଆଇ.ଙ୍କର ଦୃଷ୍ଟି ପଡ଼ିବା )

ଟି.ଟି.ଆଇ—ଚୁପ୍ କର । ସେ ଭଦ୍ରଲୋକ ଆଜି ଦେଖାଅନ୍ତ । ନିଜକୁ ଆଗ ସମ୍ଭାଳ । ତମେ ଆଗେ ଟିକେଟ ଦିଅ, ତା' ପରେ ତାଙ୍କ କଥା ବୁଝିବ ।

ଚତୁର୍ଥ ଯାତ୍ରୀ—ବୁଝିବ କଣ ? କଂସାରୀଘର ପାରିକୁ ବୁଲି ଡ଼ାହିଁ ଡ଼ାହିଁ !

ଟି.ଟି.ଆଇ—ହଁ।...ଏମନ୍ତ ? ତା' ହେଲେ ଉବଲଟିରେ ପୂରା ଓସ୍ତାଦ୍ । ସାଧୁଙ୍କ ଚେଲା । ହଉ ହଉ ଦେଖିବା ।

ଦ୍ୱିତୀୟ ଯାତ୍ରୀ—ବାବୁ, ଏ ଲୋକଟାକୁ ଧର ପଛକେ ସେ ସାଧୁଙ୍କୁ ଛାଡ଼ିଦିଅ । ଯେତେହେଲେ ସାଧୁ ଲୋକ, ପଇସାପତ୍ର ତାଙ୍କୁ ମିଳିବ କୋଉଠୁ ?

ଅନ୍ୟ ଯାତ୍ରୀମାନେ—ହଁଅ, ସେ ବାବାଜୀଙ୍କୁ ଛାଡ଼ିଦିଅ ।

ଟି.ଟି.ଆଇ—ତମେସବୁ ଜାଣିନା ବାବୁ । ସେ ବାଆ ବାଜ ବାଜ ବା···ବା···ଜ । ଇମିତି ସିମିତି ଲୁହନ୍ତି । ଓ ବାବା, ଟିକେଟ୍ ଦେବ ନା ପୋଲିସ ଡାକିବି ?

ସାଧୁ—(ପୋଲିସ ନାଁ ଶୁଣିଲାକ୍ଷଣି ନିଜ ଆସନରୁ ସନ୍ତର୍ପଣରେ ଉଠି ଟି.ଟି.ଆଇଙ୍କ ହାତରେ କିଛି ପଇସା ଗୁଞ୍ଜି ଦେବା) ବାବା, ନିଅ । ଭିକ୍ଷା କରି ଏତିକି ପାଇଥିଲି । ଆଉ ଅଧିକ କରନି ।

ଟି.ଟି.ଆଇ—ଫିଟାଅ···ଫିଟାଅ ସେ ପୁଟୁଳି । ତା ଭିତରେ ଅସଲି ଭିକ୍ଷା ଧନ ଲୁଚିଛି ।

ସାଧୁ—ନାଇଁ ବାବୁ, ପୁଟୁଳି ଫୁଟୁଳି ସିମିତି କିଛି ନାହିଁ ।

ଟି.ଟି.ଆଇ—ସେଗୁଡ଼ାକ ଆଉ ଖେଳ୍ ଦେଖାଅନି । ତମକୁ ଚିହ୍ନିବାକୁ ଆଉ ବାକି ନାହିଁ ।

ସାଧୁ—(ଆଶୀର୍ବାଦ ପାଇଁ ହାତ ଉଠାଇବା) ଶିବଶମ୍ଭୁ···ଶିବଶମ୍ଭୁ । ଆପଣଙ୍କର ଭଗବାନ ମଙ୍ଗଳ କରିବେ । ଚାକିରିରେ ଉନ୍ନତି ହେବ । ପିଲାମାନଙ୍କର ଯଶ ବଢ଼ିବ । ଦିଅ···ସାଧୁଟାକୁ ଛାଡ଼ିଦିଅ ବାବା !

ଟି.ଟି.ଆଇ—ନିଶ୍ଚୟ ହେବ ··· ନିଶ୍ଚୟ ହେବ । ତମପରି କେତେଟାଙ୍କୁ ଧରିଦେଇ ପାରିଲେ ଚାକିରିରେ ଉନ୍ନତି ନିଶ୍ଚୟ ହେବ ।

ସାଧୁ—(ଦୀର୍ଘନିଶ୍ୱାସ ପକାଇ) ଶିବଶମ୍ଭୁ···ଶିବଶମ୍ଭୁ !

ଟି.ଟି.ଆଇ—ବାବା, କଳାକୃଷ୍ଣକୁ ଭଜ । ତାଙ୍କୁ ତ ଗର୍ଭରେ ଧାରଣ କରିଛ, ଶିବଙ୍କୁ ଡାକିଲେ କ'ଣ ହେବ ?

ସାଧୁ—ହଁ ବାପା, ଶିବ ଯାହା କୃଷ୍ଣ ତାହା । ଖାଲି ନାଁର ଏପାଖ ସେପାଖ ।

ଟି.ଟି.ଆଇ—ନା...ନା, ତା କମିତ ହେବ ? କୃଷ୍ଣଙ୍କ ନିବାସ ଉଦର ପୁଟୁଳିରେ, (ଏହା କହି ସାଧୁଙ୍କ ପେଟରେ ହାତ ବୁଲାଇ ଆଣିବା) ଶିବଙ୍କ ନିବାସ ଚିଲମରେ ।

(ଟି.ଟି.ଆଇ ସାଧୁ ଘୋଡ଼ାଇ ହୋଇଥିବା ଚଦରଟିକୁ ଖୋଲିଦେଲେ, ଫଳରେ ସାଧୁଙ୍କର ଅଣ୍ଟାରେ ଗୁଡ଼ା ହୋଇଥିବା ଅଫିମ ପୁଟୁଳିଟି ଯାତ୍ରୀମାନେ ଦେଖିପାରିଲେ । ସାଧୁ ସଙ୍ଗେ ସଙ୍ଗେ ଚଦରଟି ଘୋଡ଼ାଇ ଦେଇ ଟି.ଟି.ଆଇ ହାତକୁ ପୁଳାଏ ନୋଟ୍ ବଢ଼ାଇ ଦେଲେ । ଟି.ଟି.ଆଇ ସେତକ ସମସ୍ତଙ୍କୁ ଦେଖାଇ ଏକ ଦୁଷ୍ଟହସ ହସି ପକେଟରେ ଭୂସିଇଲେ ।)

ସାଧୁ—ବାବା, ଭଗବାନ ଆପଣଙ୍କର ମଙ୍ଗଳ କରିବେ । ଏଥର ଯାଆନ୍ତୁ । ମୋଠୁ ଯାହା ପାଇଥିଲି ସବୁତକ ଦେଲି ।

ଟି.ଟି.ଆଇ—ଆଚ୍ଛା...ଆଚ୍ଛା । ଯାଉଛୁ, ଯାଉଛୁ । ଚାକିରିରେ ନିଶ୍ଚୟ ଉନ୍ନତି ହେବ ତ ?

ସାଧୁ—ବାବା, ସାଧୁସନ୍ଥଙ୍କ ବାକ୍ୟ ବ୍ୟର୍ଥ ଯାଏନି, ବହୁ ଉନ୍ନତି ହେବ । ଏଥର ଯାଅ ବାବା !

ଟି.ଟି.ଆଇ—(ଚତୁର୍ଥ ଯାତ୍ରୀକୁ ଲକ୍ଷ୍ୟ କରି) ଉଠ, ତମେ ବି କିଛୁ ଏଥର ଉନ୍ନତି କରିଅ । ଚାଲ (ଟି.ଟି.ଆଇ ଓ ଚତୁର୍ଥ ଯାତ୍ରୀ ଆଗପଛ ହୋଇ ଚାଲିଲେ ।)

ସାଧୁ—(ନିଜ ଆସନରେ ବସି ପୁଣି ଧ୍ୟାନମଗ୍ନ ହେବା, ଚଟ୍‌କରି ଉଠିପଡ଼ି ଚିତ୍କାର କରିବା) ଟି.ଟି.ଆଇ ବାବୁ, ଓ ଟି.ଟି.ଆଇ ବାବୁ, ପଇସା ତ ନେଲ···ଟିକେଟ କାହିଁ ଦେଲନି !

ଟି.ଟି.ଆଇ—(ଅନ୍ୟସ୍ଥଳରୁ) ମିଳିବ···ମିଳିବ । ଅଫିସ୍‌ରୁ ଟିକେଟଟା ପଠେଇ ଦେଉଛୁ । ନିଶ୍ଚିନ୍ତରେ ବସନ୍ତୁ ।

ସାଧୁ—(ନିଜର ଆସନରେ ବସି ଧ୍ୟାନମଗ୍ନ ହେବା) ବଂ···ବଂ ଶିବଶମ୍ଭୁ···ଶିବଶମ୍ଭୁ ।

ପୋଲିସ୍—(ପ୍ରବେଶ କରି) ସାଧୁଜୀ ଆସନ୍ତୁ ।

ସାଧୁ—(ଚମକିପଡ଼ି) ଭଗବାନ୍ ମଙ୍ଗଳ କରନ୍ତୁ ବାବା, ମୁଁ ଟି.ଟି.ଆଇ ବାବୁଙ୍କୁ ଟିକେଟ ପଇସା ଦେଇ ଦେଇଛି । ଆଜ ଆସିଲି କାହିଁକି ?

ପୋଲିସ୍—ପଇସା ମିଳିଲେ କଣ ହେବ ? ମାମୁଁ ଘରକୁ ଚାଲ । ଅଣ୍ଟାରେ ଅଫିମ ପୁଟୁଳି ଧରି ସାଧୁ ବନିଛ, ବୁଝିଛ ? ଏ ଉକେଇଣ୍ଡ କେତେଦିନ ଚାଲିବ ? ତମପରି ସ୍ମଗଲରମାନଙ୍କୁ ଭଗବାନ ବି କ୍ଷମା ଦେବେନି । ଚାଲ···ଚାଲ ।

ସାଧୁ—ବଂ···ବଂ···ଶିବଶମ୍ଭୁ···ଶିବଶମ୍ଭୁ । ଧର୍ମ ସମ୍ଭବନି, ଧର୍ମ ସମ୍ଭବନି । (ପରଦା)

# ଚରଣ ଭିକ୍ଷା

[ ସ୍ୱର୍ଗପୁରୀ, ପ୍ରହ୍ଲାଦ ଇନ୍ଦ୍ରପଦରେ ଅଭିଷିକ୍ତ ।
ସ୍ୱୟଂ ଇନ୍ଦ୍ର ଗାଦିଚ୍ୟୁତ ଅବସ୍ଥାରେ ଥାଆନ୍ତି ।
ମଂଚ ଆସ୍ତେ ଆସ୍ତେ ଆଲୋକିତ ହେଲା ।
ନେପଥ୍ୟରୁ ଶୁଣାଗଲା ବେଦମନ୍ତ୍ର ଧ୍ୱନି । ସତେ
ଯେପରି ସେହି ମନ୍ତ୍ରର ଆଲୋକ ସ୍ପର୍ଶରେ ମଞ୍ଚ-
ବୁକୁ ଆଲୋକିତ ହୋଇ ଆସୁଛି ]

( ନେପଥ୍ୟରେ ମନ୍ତ୍ର ଧ୍ୱନି )

"ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନିମାହୁ
ରଥୋ ଦିବ୍ୟଃ ସ ସୁପର୍ଣ୍ଣୋ ଗୁରୁତ୍ମାନ
ଏକ ସଦ୍ ବିପ୍ରା ବହୁଧା ବଦ-
ନ୍ତ୍ୟଗ୍ନିଂ ଯମଂ ମାତରିଶ୍ୱାନମାହୁ ।"

[ ମଂଚ ଆଲୋକିତ ହେବା ସମୟରେ ଦେଖାଗଲା,
ଇନ୍ଦ୍ର ପାଗଳଙ୍କ ପରି ବିଚରଣ କରୁଛନ୍ତି । କିଛି
ସମୟ ପରେ ଦେବଗୁରୁ ବୃହସ୍ପତିଙ୍କର ପ୍ରବେଶ ]

ଇନ୍ଦ୍ର—ଦେବଗୁରୁ ବୃହସ୍ପତିଙ୍କର ଜୟ ହେଉ !

ବୃହସ୍ପତି—ଓ' ଇନ୍ଦ୍ରଦେବ, ଆପଣ କାହିଁକି ଏଠାରେ ?

ଇନ୍ଦ୍ର—ଦେବଗୁରୁ ! ଆପଣ କ'ଣ ମୋର ମାନସିକ ଅବସ୍ଥା ବୁଝିବା ପାଇଁ ଅସମର୍ଥ ? ଜୀବନରେ ଏ ପରାଜୟ ମୃତ୍ୟୁର ପରାଭବଠାରୁ ଆହୁରି ଯନ୍ତ୍ରଣାପୂର୍ଣ୍ଣ ।

ବୃହସ୍ପତି—ବୁଝିଛି ଦେବରାଜ, ସମସ୍ତଙ୍କୁ ନିୟତିର ଲିଖନ ଭୋଗ କରିବାକୁ ପଡ଼େ । ଆପଣ ଏତେ ବିଚଳିତ ହେଲେ ଚଳିବ ? ଇନ୍ଦ୍ରପଣ ସିନା ଯାଇଛି, କିଂନ୍ତୁ ଇନ୍ଦ୍ରତ୍ୱ କ'ଣ ଭୁଲିଗଲ ?

ଇନ୍ଦ୍ର—ଦେବଗୁରୁ ! ଇନ୍ଦ୍ରପଣ ହରାଇ ଇନ୍ଦ୍ର ବୋଲି ପରିଚୟ ଦେବାର ନିର୍ଲଜ୍ଜତା କ'ଣ ଶାନ୍ତି ଦେଇ ପାରିବ ? ଯୋଗ୍ୟତାର ମାପକାଠିରେ ମୁଁ ଆଜ ମାନ ହରାଇଛି । ମାନ ସମ୍ମାନ ଓ ପଦବୀ ହରାଇ କେହି କେବେ ମର୍ଯ୍ୟାଦାଶୀଳ ହୋଇ ରହି ପାରିବ ତ ?

ବୃହସ୍ପତି—ତେବେ ଆପଣଙ୍କର ଇଚ୍ଛା କ'ଣ ? ଆପଣ କଣ ଚାହାନ୍ତି ?

ଇନ୍ଦ୍ର—ମୁଁ ଚାହେଁ ଆପଣଙ୍କର ଆଶୀର୍ବାଦ । ମୋତେ ଆପଣ କିଛି ବୁଦ୍ଧି ଦିଅନ୍ତୁ ଦେବଗୁରୁ ! ଯାହାଫଳରେ ମୋର ଇନ୍ଦ୍ରାସନ ମୋତେ ପୁଣି ମିଳିବ । ଆପଣ ହିଁ ଏକମାତ୍ର ମୋତେ ସାହାଯ୍ୟ କରିପାରିବେ ।

ବୃହସ୍ପତି—ହଁ ପାରିବି, ତେବେ···

ଇନ୍ଦ୍ର—ଗୁରୁଦେବ, ଟିକଏ ଦୟାକରି କହନ୍ତୁ । ମୁଁ ଆପଣଙ୍କ ଦୟା ଭିକ୍ଷା କରିବାକୁ ଚାହେଁ । ଆଶୀର୍ବାଦ ଦିଅନ୍ତୁ ।

ବୃହସ୍ପତି—ଉପାୟ ଅଛି, ଆପଣ ଇନ୍ଦ୍ରପଦ ଫେରି ପାଇବାର କୌଣସି ଅସୁବିଧା ନାହିଁ । ତେବେ···

ଇନ୍ଦ୍ର—କୁହନ୍ତୁ ଗୁରୁଦେବ, ଅନ୍ତରର ଉଦ୍‌ବେଗ ଆଉ ବଢ଼ାନ୍ତୁ ନାହିଁ । ମୋର ବ୍ୟାକୁଳତା ଯେ ଆପଣଙ୍କ ହୃଦୟକୁ ସ୍ପର୍ଶ କରିଛି, ତାହା ମୋ ପାଇଁ ସୌଭାଗ୍ୟର କାରଣ । କୁହନ୍ତୁ ଦେବ !

ବୃହସ୍ପତି—ମୁଁ ଗୋଟିଏ କଥା ପଚାରୁଛି ।

ଇନ୍ଦ୍ର—ଆପଣ ଆଉ ପଚାରୁଛନ୍ତି କ'ଣ ? ଦୟା କରନ୍ତୁ ଦେବ, ହତଭାଗ୍ୟକୁ ତାର ଇନ୍ଦ୍ରପଦ ଫେରି ପାଇବାର ବାଟ ବତାଇ ଦିଅନ୍ତୁ । ସମସ୍ତ ବିଧି ବିଧାନର ରହସ୍ୟ ଯେଉଁ ବୃହସ୍ପତିଙ୍କୁ ଜଣା, ତାଙ୍କ ପାଖରେ ଅସମ୍ଭବ କଣ ?

ବୃହସ୍ପତି—ଏଥିରେ କଣ ଆପଣଙ୍କର ବିଶେଷ ଲାଭ ହେବ ?

ଇନ୍ଦ୍ର—ଲାଭ ହେବନି ! ମୁଁ ମୋର ପୂର୍ବ ଇନ୍ଦ୍ରପଦ ଯଦି ଫେରି ପାଏ, ତେବେ ଲାଭ ହେବନି ? ଆପଣ ପଚାରୁଛନ୍ତି କଣ ମୁଁ ବୁଝି ପାରୁନି ।

ବୃହସ୍ପତି—ମୁଁ ଆପଣଙ୍କ ଅନୁରୋଧକୁ ଉପେକ୍ଷା କରି ପାରିବିନି । ନିଶ୍ଚୟ ବାଟ ବତାଇ ଦେବି । ପଦଲାଭ ପାଇଁ ଏତେ ବ୍ୟାକୁଳତା କାହିଁକି ?

ଇନ୍ଦ୍ର—ଦେବଗୁରୁ, ଇନ୍ଦ୍ର ତାର ଇନ୍ଦ୍ରପଦ ଫେରି ପାଇବା ପାଇଁ ବ୍ୟାକୁଳ ହେବା ସ୍ୱାଭାବିକ ।

ବୃହସ୍ପତି—ସେ ପଦ ଯଦି ମର୍ଯ୍ୟାଦା ଦାନ କରି ନ ପାରେ ?

ଇନ୍ଦ୍ର—ଏ ପୁଣି ଏକ ସର୍ତ୍ତ କାହିଁକି ? ପୂର୍ବ ପଦରୁ କ୍ଷୁଣ୍ଣ କଳାପରି କୌଣସି ସମ୍ମାନ ମୋର ଅଭିଳାଷ ନୁହେଁ । ସେହି ଅବିକୃତ ଇନ୍ଦ୍ରପଦ ଲାଭ ହିଁ ମୋର ଏକମାତ୍ର କାମ୍ୟ ।

ବୃହସ୍ପତି—ପ୍ରହ୍ଲାଦଙ୍କର ତ୍ୟାଗ ଓ ଆପଣଙ୍କର ଗ୍ରହଣ ଭିତରେ ସେ ହେବେ "ତ୍ୟାଗରାଜ" ପ୍ରହ୍ଲାଦ ଓ ଆପଣ ହେବେ "ଭୋଗରାଜ" ଇନ୍ଦ୍ର । ପୂର୍ବ ପଦ, ସମ୍ମାନ, କ୍ଷମତା ଅବିକଳ ଭାବରେ ସବୁ ପାଇବେ; କିନ୍ତୁ ନୈତିକତା ଦୃଷ୍ଟିରୁ, ବିଧାତାର

ପ୍ରଧାନ ଦୃଷ୍ଟିରୁ ଇନ୍ଦ୍ରପଦର ତାତ୍ତ୍ୱିକ ମୂଲ୍ୟ ଆପଣଙ୍କୁ ମିଳିବ ନାହିଁ । କୁହନ୍ତୁ, ଆପଣ କ'ଣ ଚାହାନ୍ତି ?

ଇନ୍ଦ୍ର—କହୁଛି ତ । ମୁଁ ମୋ ପୂର୍ବ ପଦକୁ ଅବିକଳ ଭାବରେ ଲାଭ କରିବାକୁ ଚାହେଁ ।

ବୃହସ୍ପତି—ଠିକ୍ ଅଛି, ତାହାହିଁ ମିଳିବ । ହରାଇବା ଭିତରେ ସେ ହେବେ ମହାନ୍, ସେ ହେବେ ସ୍ଥିର ଇନ୍ଦ୍ର, ଆଜି ଆପଣ ହେବେ ସ୍ଥିର ଇନ୍ଦ୍ର ।

ଇନ୍ଦ୍ର—ଆଜି ଅଧିକ ଲଜ୍ଜା ଦିଅନ୍ତୁନି, ମୋର ମନୋବାଞ୍ଛା ପୂର୍ଣ୍ଣ କରନ୍ତୁ ଦେବଗୁରୁ !

ବୃହସ୍ପତି—ଆପଣଙ୍କର ଏହି ଦୟନୀୟ ପରିସ୍ଥିତିରେ ପ୍ରକୃତରେ ମୁଁ ବ୍ୟଥିତ । ସିଧା ବାଟରେ ଇନ୍ଦ୍ରପଦ ମିଳିବନି, କିଛି କୌଶଳ କରିବାକୁ ପଡ଼ିବ ।

ଇନ୍ଦ୍ର—ପଡ଼ୁ । ମୁଁ ସବୁଥି ପାଇଁ ପ୍ରସ୍ତୁତ । ରାଜନୀତି, କୂଟନୀତି—ଏଥିରେ କୌଶଳ ହିଁ ଏକମାତ୍ର ମନ୍ତ୍ର । ମୁଁ ଆପଣଙ୍କ ଠାରୁ ଏକ ମହତ୍ତର କୌଶଳ ଚାହେଁ । ସେ ସୁଯୋଗ ଦିଅନ୍ତୁ ଦେବଗୁରୁ !

ବୃହସ୍ପତି—ଆଚ୍ଛା, ଗୋଟିଏ କାମ କରିପାରିବେ ?

ଇନ୍ଦ୍ର—କୁହନ୍ତୁ ।

ବୃହସ୍ପତି—ବିଶେଷ କିଛି କଠିନ କାମ ନୁହେଁ । ଆପଣଙ୍କୁ ଏକ ଭିକ୍ଷାର୍ଥୀର ବେଶ ନେବାକୁ ହେବ । ଯାଚକ ବେଶରେ ଯାଇ ଦେବରାଜ ପ୍ରହ୍ଲାଦଙ୍କ ଦରବାରରେ "ଇଚ୍ଛାଦାନ" ଦିବସରେ ପହଞ୍ଚିବେ । ସେଦିନ ସେ ପ୍ରତ୍ୟେକ ଯାଚକର ସବୁ ଇଚ୍ଛା ପୂରଣ କରନ୍ତି ।

ଇନ୍ଦ୍ର—ଆପଣ କ'ଣ ଏଇ ଉପଦେଶ ଦେଲେ ? ମୁଁ ଇନ୍ଦ୍ରପଦ ଭିକ୍ଷା କରିବି ?

ବୃହସ୍ପତି—ମୁଁ କଣ ତା' କହିଲି ? ଆପଣ ତାଙ୍କୁ ଏକମାତ୍ର ଚରିତ୍ର ଭିକ୍ଷା କରିବେ । ଦେଖିବେ, ତା ପରର ପରିସ୍ଥିତି କ'ଣ ହେଉଛି ।

ଇନ୍ଦ୍ର—ମୁଁ ବୁଝି ପାରୁନି ଗୁରୁଦେବ !

ବୃହସ୍ପତି—ବୁଝିବାର ଆବଶ୍ୟକତା କିଛି ନାହିଁ । ମୋ ଉପରେ ଆସ୍ଥା ଥିଲେ ପରୀକ୍ଷା କରି ଦେଖନ୍ତୁ । ଆପଣଙ୍କର ଇନ୍ଦ୍ରପଦ ଏଥିରେ ଫେରି ଆସିବାର ସୂତ୍ର ଅଛି କି ନାହିଁ ।

ଇନ୍ଦ୍ର—(ପ୍ରଣାମ ହୋଇ) ଦେବଗୁରୁ ବୃହସ୍ପତିଙ୍କର ଜୟ ହେଉ ।

-ପରଦା-

## ଦ୍ୱିତୀୟ ଦୃଶ୍ୟ

( ଧ୍ୱନି )

ବସୋଃ ପବିତ୍ରମସି ଶତଧାରଂ
ବସୋଃ ପବିତ୍ରମସି ସହସ୍ର ଧାରଂ
ଦେବସ୍ତ୍ୱା ସବିତା ପୁନାତୁ
ବସୋଃ ପବିତ୍ରେଣ, ଶତଧାରେଣ ସୁପ୍ୱାକାଧଧୁକ୍ଷଃ ।

[ ମଞ୍ଚ ଆଲୋକିତ ହେଲାକ୍ଷଣି ଛଦ୍ମବେଶୀ ଇନ୍ଦ୍ର ବ୍ରାହ୍ମଣ ବେଶରେ ଉପଗତ । ଇନ୍ଦ୍ରାସନରେ ଉପବିଷ୍ଟ ପ୍ରହ୍ଲାଦ ]

ପ୍ରହ୍ଲାଦ—ପ୍ରଣାମ ଗ୍ରହଣ କରନ୍ତୁ ବ୍ରାହ୍ମଣ ! ଅଭିଳାଷ ପ୍ରକାଶ କରନ୍ତୁ । ଆପଣଙ୍କୁ ଶାନ୍ତ ଦେଇପାରିଲେ କୃତାର୍ଥ ହେବି ।

ବ୍ରାହ୍ମଣ—ହେ ଯଶସ୍ୱୀ ଦେବାଧିଦେବ ! ଆପଣଙ୍କ ପକ୍ଷରେ କୌଣସି କଥା ଅସମ୍ଭବ ନୁହେଁ । ଆପଣ ତ୍ୟାଗର ସୁରଧୁନୀ । ଏ ବ୍ରାହ୍ମଣ ଆପଣଙ୍କ ଦର୍ଶନ ଲଭ ପାଇଁ କେବଳ ଆସିଥିଲି । ଏହାହିଁ ବହୁ ପୁଣ୍ୟର ଫଳ ।

ପ୍ରହ୍ଲାଦ—କୁହନ୍ତୁ ଅତିଥି, ଆପଣଙ୍କର କିଛି ଅଭିଳାଷ ଥିଲେ ପ୍ରକାଶ କରନ୍ତୁ । ଧନରତ୍ନ, ଭୋଗବିଳାସ, ରାଜ୍ୟ ସିଂହାସନ, ଆପଣ ଯାହା ଚାହିଁବେ ମୁଁ ତାହା ଆପଣଙ୍କ ହସ୍ତରେ ଅର୍ପଣ କରି ନିଜକୁ କୃତାର୍ଥ ମନେ କରିବି । ନିଃସଙ୍କୋଚରେ କୁହନ୍ତୁ ଅତିଥି ! ମୁଁ ଆପଣଙ୍କ ସେବାରୁ ଯେପରି ବଞ୍ଚିତ ନ ହୁଏ ।

ବ୍ରାହ୍ମଣ—ମୁଁ ଏକ ଭିକ୍ଷାଣୀ ବ୍ରାହ୍ମଣ । ମୋର ସେସବୁ ଧନ ସମ୍ପତ୍ତି, ରାଜ୍ୟ ସିଂହାସନ କଣ ହେବ ? ଆପଣଙ୍କର ଦୁର୍ଲଭ ଦର୍ଶନରୁ ମୋତେ ସବୁ ମିଳି ସାରିଛି, ସେତିକି ହିଁ ଯଥେଷ୍ଟ । ବିଦାୟ ଦିଅନ୍ତୁ ଦେବ !

ପ୍ରହ୍ଲାଦ—ବିଦାୟ ! ଅତିଥି-ଦେବତା ଏ ରାଜଦରବାରରୁ ବିଦାୟ ନେବେ ରିକ୍ତହସ୍ତରେ ? ନା ନା, ତା ହୋଇ ପାରିବ ନାହିଁ । ଆପଣଙ୍କୁ ଯାହା ଆକର୍ଷଣ କରିଛି, ତାହା ପ୍ରକାଶ କରି ପାରନ୍ତି । ମୁଁ ଆପଣଙ୍କର ସେବା କରି "ଇଚ୍ଛାଦାନ" ବ୍ରତ ପୂରଣ କରିବି ।

ବ୍ରାହ୍ମଣ—ଦେବ, ମୋତେ ଆପଣଙ୍କର ଧନସମ୍ପତ୍ତି କିଛି ଆକର୍ଷଣ କରି ନାହିଁ, କେବଳ ଗୋଟିଏ ଜିନିଷ ଆକର୍ଷଣ କରିଛି ଯେ— ତାହା କଣ ଆପଣ ଦାନ କରିପାରିବେ ?

ପ୍ରହ୍ଲାଦ—ଦୟାକରି କହନ୍ତୁ ଅତିଥି । ପ୍ରାଣଠାରୁ ବଳି ପ୍ରିୟବସ୍ତୁ ଆଉ କିଛି ନାହିଁ । ଦରକାର ହେଲେ ପ୍ରାଣଦାନ କରିବାକୁ

ମୁଁ ବିମୁଖ ନୁହେଁ । ଏଥର ଆପଣଙ୍କର ଅଭିଳାଷ ପ୍ରକାଶ କରନ୍ତୁ ।

ବ୍ରାହ୍ମଣ—ନିଶ୍ଚୟ ପ୍ରକାଶ କରିବି । ବ୍ରାହ୍ମଣର ଯାଚନା ଦେବରାଜ ଇନ୍ଦ୍ରଙ୍କ ମନରେ କାଳେ ଆଘାତ ଦେବ, ସେଇଥି ପାଇଁ ଚିନ୍ତିତ ହେଉଛି ।

ପ୍ରହ୍ଲାଦ—ଭାବିବାର କିଛି ନାହିଁ । ମୁଁ ମୋର ଦୃଢ଼ ନିଷ୍ପତ୍ତି ଦେଇ ସାରିଛି । ମୋର ପ୍ରତିଜ୍ଞାରେ ମୁଁ ଅଟଳ ।

ବ୍ରାହ୍ମଣ—ଏକମାତ୍ର ଆପଣଙ୍କର ଚରିତ୍ର ମୋତେ ଆକୃଷ୍ଟ କରିଛି । ତାହାହିଁ ମୋର ଆନ୍ତରିକ ଭିକ୍ଷା । ଦୟାକରି ଦାନ କରି ପାରିବେ ଦେବରାଜ ?

ପ୍ରହ୍ଲାଦ—(ସସ୍ମିତ) ବ୍ରାହ୍ମଣ ! ଆପଣ ଜଣେ ସାମାନ୍ୟ ଯାଚକ ନୁହନ୍ତି । ମୁଁ ପରମ ଆନନ୍ଦରେ ଆପଣଙ୍କର ଯାଚନା ପୂରଣ କରିବି । ଅତଏବ, ଏତେ ପ୍ରଲୋଭନକୁ ଉପେକ୍ଷା କରି ଚରିତ୍ର ଭିକ୍ଷାରେ କି ଗୂଢ଼ଲକ୍ଷ୍ୟ ଚରିତାର୍ଥ ହେବ ?

ବ୍ରାହ୍ମଣ—ଯାଚକର ମନୋବାଞ୍ଛା ପୂର୍ଣ୍ଣ କରିବାର ପ୍ରତିଜ୍ଞା ଓ ପ୍ରତିଶ୍ରୁତି ପରେ ଏ ବ୍ରାହ୍ମଣ ତାର ଅଭିଳାଷ ପ୍ରକାଶ କରିଛି । ଏ ଦିଗରେ ଅନ୍ୟ କୌଣସି ପ୍ରଶ୍ନର ଆବଶ୍ୟକତା କିଛି ନାହିଁ ।

ପ୍ରହ୍ଲାଦ—ଆନନ୍ଦିତ ହେଲି, ଆପଣଙ୍କର ମାନସିକ ଦୃଢ଼ତା ଦେଖି । ତେବେ ଏ ଭିକ୍ଷା ଯେତେ ନିଷ୍ଠୁର ହେଲେ ବି ମୁଁ ତାହା ପୂରଣ କରିବି । ଏ ଶୁଭ ମୁହୂର୍ତ୍ତରେ ମୁଁ ଆପଣଙ୍କୁ ମୋର ଚରିତ୍ର ଅର୍ପଣ କଲି । ଆପଣ ମୋର ଚରିତ୍ର ମଣ୍ଡିତ ହୁଅନ୍ତୁ ।

(ଆଖିପିଛୁଳାକେ ତାଙ୍କ ଭିତରୁ ଏକ ଉଜ୍ଜ୍ୱଳ ଜ୍ୟୋତି ମଣିଷ ରୂପରେ ବାହାରି ଆସିଲା )

ପ୍ରହ୍ଲାଦ—(ଆଶ୍ଚର୍ଯ୍ୟ-ବିସ୍ଫାରିତ ନୟନରେ ଦୃଷ୍ଟି)
ହେ ଜ୍ୟୋତିଷ୍ମାନ୍ ! ତୁମେ କିଏ ? କୁଆଡ଼େ ଯାଉଛ ?

ଚରିତ—ଦେବ ! ମୁଁ ହେଉଛି ଆପଣଙ୍କର ଚରିତ । ଆପଣ ମୋତେ ବ୍ରାହ୍ମଣଙ୍କ ହସ୍ତରେ ଅର୍ପଣ କରିଥିବାରୁ ମୁଁ ତାଙ୍କ ପାଖକୁ ଯାଉଛି । ଆପଣ ଆଜଠାରୁ ଚରିତହରା ବ୍ୟକ୍ତି । (ପ୍ରସ୍ଥାନ)

(ପୁଣି ଏକ ମନୁଷ୍ୟରୂପୀ ଉଜ୍ଜ୍ୱଳ ଉଦ୍ଭାସ ବାହାରି ଆସିବା)

ପ୍ରହ୍ଲାଦ—ହେ ଜ୍ୟୋତିର୍ମୟ ! ତୁମେ ପୁଣି କିଏ ? କୁଆଡ଼େ ଯାଉଛ ?

ଶୌର୍ଯ୍ୟ—ମୁଁ ହେଉଛି ଆପଣଙ୍କର ଶୌର୍ଯ୍ୟ । ମୁଁ ସର୍ବଦା ଚରିତର ସେବକ, ତାର ଚିର ସହଚର । ଯେ ପର୍ଯ୍ୟନ୍ତ ଆପଣଙ୍କ ପାଖରେ ଚରିତ ଥିଲା, ସେ ପର୍ଯ୍ୟନ୍ତ ମୁଁ ଆପଣଙ୍କ ପାଖେ ପାଖେ ଥିଲି । ବର୍ତ୍ତମାନ ଚରିତ ଯେଉଁଆଡ଼େ ଗଲା, ମୁଁ ତାକୁହିଁ ଅନୁସରଣ କରୁଛି । ଚରିତହରା ବ୍ୟକ୍ତି ନିଜର ଶୌର୍ଯ୍ୟ ଓ ପୌରୁଷକୁ ରକ୍ଷା କରିବା ସମ୍ପୂର୍ଣ୍ଣ ଅସମ୍ଭବ ।
(ପ୍ରସ୍ଥାନ)

( କିଛି ସମୟ ପରେ ପୁଣି ଏକ ଉଜ୍ଜ୍ୱଳସମୟୀ ନାରୀମୂର୍ତ୍ତି ବାହାରି ଆସିଲେ )

ପ୍ରହ୍ଲାଦ—ହେ ତେଜୋମୟୀ ନାରୀ ! ତୁମେ ପୁଣି କିଏ ? ତୁମେ ଯାଉଛ କୁଆଡ଼େ ?

ରାଜଲକ୍ଷ୍ମୀ—ମୁଁ···ମୁଁ ହେଉଛି ରାଜଲକ୍ଷ୍ମୀ । ଚରିତର ଚିର-ସେବିକା । କ୍ଷୀର-ସମୁଦ୍ର ଭିତରୁ ମୋର ଜନ୍ମ । ମୋର

ପ୍ରକୃତ ହେଉଛୁ ଚଞ୍ଚଳ, ମୁଁ ତେଣୁ ଚଞ୍ଚଳା । ମୁଁ କାହାର ପରିଚୟ ମାନେନା, ଆଭିଜାତ୍ୟକୁ ସ୍ୱୀକାର କରେନା, ରୂପରେ ଭୁଲେନା । ମୁଁ ଏକମାତ୍ର ଚରିତ୍ରର ସେବିକା । ଏପର୍ଯ୍ୟନ୍ତ ଆପଣଙ୍କ ଚରିତ୍ରକୁ ଆଶ୍ରା କରି ଏହି ରାଜପୁରୀରେ ଥିଲି । ଆପଣ ନିଜର ଚରିତ୍ରକୁ ବ୍ରାହ୍ମଣଙ୍କୁ ଦାନ କରିଥିବାରୁ ମୁଁ ତାଙ୍କରି ପାଖକୁ ଯାଉଛି । ଯେ ଚରିତ୍ରହରା, ସେ ସର୍ବହରା । (ପ୍ରସ୍ଥାନ)

(ମଞ୍ଚ ଅନ୍ଧକାର ହେବା ପରେ ପରେ ପୁଣି ଆଲୋକିତ ହେଲା । ଏତିକବେଳେ ଦେଖାଗଲା, ବ୍ରାହ୍ମଣଙ୍କର ପୂର୍ବରୂପ ଇନ୍ଦ୍ର ରୂପରେ ଶୋଭା ପାଉଛି ଓ ପ୍ରହ୍ଲାଦ ଇନ୍ଦ୍ରରୂପ ହରାଇଛନ୍ତି ।

ପ୍ରହ୍ଲାଦ—ଆପଣ ପ୍ରକୃତରେ ଇନ୍ଦ୍ରପଦ ପାଇଁ ଯୋଗ୍ୟ—ମୁଁ ଅଯୋଗ୍ୟ । ଚରିତ୍ରହରାର ଇନ୍ଦ୍ରପଦ ପାଇଁ ଯୋଗ୍ୟତା ନାହିଁ । ପ୍ରଣାମ ଗ୍ରହଣ କରନ୍ତୁ ଇନ୍ଦ୍ରରାଜ ! ଜୟ ଦେବାଧିଦେବ ଇନ୍ଦ୍ରଙ୍କର··ଜୟ ।

(ନେପଥ୍ୟରୁ ଜୟଧ୍ୱନି ଶୁଣାଗଲା, ମଞ୍ଚ ଅନ୍ଧକାର ହେଲା )

ପଞ୍ଚ ପତନ

## ପାତ୍ରସୂଚୀ

ଶକୁନି—ଦୁର୍ଯ୍ୟୋଧନଙ୍କର ମାମୁଁ

ଦୁର୍ଯ୍ୟୋଧନ—କୌରବରାଜ

ଗୌର ପଣ୍ଡା—ପୁରଞ୍ଜନ ପଣ୍ଡା, ଯେ କି ପାଣ୍ଡବମାନଙ୍କୁ ମାରିବା ପାଇଁ ଜଉ ଘରେ ନିଆଁ ଲଗାଇଥିଲା, ତାଙ୍କ ପୁଅ ।

ପଞ୍ଚୁପାଣ୍ଡବ—ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ

ଦ୍ରୌପଦୀ—ପାଣ୍ଡବପତ୍ନୀ

ତପସ୍ୱୀ—ଗଉର ପଣ୍ଡା ଛଦ୍ମବେଶରେ

ଶ୍ରୀକୃଷ୍ଣ—ପାଣ୍ଡବସଖା

# ସତ୍ୟର ଜୟ

## ପ୍ରଥମ ଦୃଶ୍ୟ

[ ମଂଚ ଆଲୋକିତ ହେଲା ବେଳକୁ ଦେଖାଗଲା ଦୁର୍ଯ୍ୟୋଧନଙ୍କ ରାଜସଭା, ତାଙ୍କର ମାମୁଁ ଶକୁନି ଆନନ୍ଦରେ କହି କହି ପ୍ରବେଶ କଲେ । ]

ଶକୁନ—ବାଃ···ବାଃ···ବାଃ, ଚମତ୍କାର ! ଚମତ୍କାର !

-ଗୀତ-

ଆଜ୍ ଫେରିବେ···ଆଜ୍ ଫେରିବେ
ଆଉ ଫେରିବେ ନାହିଁରେ ଫେରିବେ ନାହିଁ
ସେ ପାଣ୍ଡବ ପଞ୍ଚୁ ଗୋସାଇଁ ।
ବଣକୁ ଗଲେଣି ନ' ବରଷ ହେଲା
ବାଘଭାଲୁ ତାଙ୍କୁ ମାରି ଦେବେଣି ।

(ହଠାତ୍ ଗୀତ ବନ୍ଦ କରି) ଶୁଣ···ଶୁଣ ଦୁର୍ଯ୍ୟୋଧନ, କାହିଁ-ପାଇଁ ଚିନ୍ତା ତବ, କରି ସୁଖେ ଧରଣୀ ପାଳନ ।

ଦୁର୍ଯ୍ୟୋଧନ—(ପ୍ରବେଶ କରି)

-ଗୀତ-

ଶୁଣ ହେ ମାତୁଳ ମୋର ମନେ ମୋ ସଂଶୟ,
ସେ ପଞ୍ଚପାଣ୍ଡବ ବନେ ଫେରିବେ ନିଶ୍ଚୟ ।
ବନବାସ ସରି ନାହିଁ ବହୁବର୍ଷ ବାକି,
ଥରୁଛୁ ହୃଦୟ ମୋର ଭୟେ ଦିନରାତି ।

ମନେ ନାହିଁ ଶାନ୍ତି ମୋର
ଅସ୍ଥିର ପରାଣ ସଦା ଚିନ୍ତା ଘାରେ ଘୋର ।
ଦେଇକି ପାରିବ ମୋତେ ପାଣ୍ଡବ ସନ୍ଧାନ
ମଲେଣି କି ବଞ୍ଚିଛନ୍ତି ମୁଁ ତ ସନ୍ଦିହାନ
ବଞ୍ଚିଥିଲେ ରାଜ୍ୟ ମୋର ନେବେ ସେ ଛଡ଼ାଇ
କେତେଦିନ ରହିବ ହେ ଏ' ମୋର ବଡ଼ାଇ
ମାମୁଁ, ତୁମ ବିନା କେହି
ଏ ଜୀବନେ ଶାନ୍ତି ମୋତେ ନ ପାରିବ ଦେଇ ।

ଶକୁନି—ଓଃ, ଏଇଥିପାଇଁ ତୁମର ଏତେ ଚିନ୍ତା ! ସବୁ ଠିକ୍ କରିଦେବି । ପାଣ୍ଡବମାନଙ୍କର ସନ୍ଧାନ ନେବା ଶକୁନି ପକ୍ଷରେ ଅସମ୍ଭବ ନୁହେଁ ।

-ଗୀତ-

ତୁମେ, ଜାଣିଛ ଜାଣିଛ ଧନ ଜତୁଘର ଘଟଣା
କି ନ କଲି ସେ ପୁରିଆ ପଣ୍ଡା ବଡ଼ ମାରଣା
ପାଣ୍ଡବଙ୍କୁ ପୂରାଇ
ଦେଲି ନିଆଁ ଲଗାଇ
ଟିକକେ ବଞ୍ଚିଗଲେ ସେ ସିନା !
ତାର ପୁଅ ଗଉର, ଅଟଇ ସେ ଚତୁର
ଖବର ନ ରହିବ ଅଜଣା ।

ଦୁର୍ଯ୍ୟୋଧନ—ମାମୁଁ, ଆପଣ ମୋର ପିତା ସଦୃଶ । ଜୀବନର ସବୁ ସଙ୍କଟ ସମୟରେ ଆପଣ ମୋତେ ସାହାଯ୍ୟ କରିଆସିଛନ୍ତି । ଏ ବିଷମ ସଙ୍କଟରୁ ରକ୍ଷା କରନ୍ତୁ !

ଶକୁନ—ଚିନ୍ତା କରନ୍ତୁ ନାହିଁ କୁରୁସିଂହ ! ଆପେ ଆପେ ସବୁ ଠିକ୍ ହୋଇଯିବ । ମୁଁ ଆସୁଛି । (ପ୍ରସ୍ଥାନ)

-ପଞ୍ଚ ପତନ-

ଦ୍ୱିତୀୟ ଦୃଶ୍ୟ

ଗୌରପଣ୍ଡା—(ଅଦ୍ଭୁତ ଢଙ୍ଗରେ ନିଜକୁ ସଜାଇ, ଆନନ୍ଦରେ ଗୀତ ଗାଇ ଗାଇ ପ୍ରବେଶ)

-ଗୀତ-

ଇମିତ ସିମିତ ଲୋକ
ଆମେ ନୋହୁଁ···ହୋ ।

ଆମ ଗୁଣ କରାମତ
ବିଶ୍ବରେ ଉଡ଼େ କୀରତ

ପୁର ପଣ୍ଡା ପୁଅ—
ଡରେ, ନାହିଁ କାହାକୁ···ହୋ
ଇମିତ ସିମିତ ଲୋକ
ଆମେ ନୋହୁଁ···ହୋ ।

ଶକୁନ—(ପ୍ରବେଶ କରି) ପାଟିରେ ଖାଲି କହିଲେ ଚଳିବନି, କାମରେ ଦେଖାଇବାକୁ ପଡ଼ିବ ।

ଗଉର—ସେତିକ କ'ଣ ବାକି ଅଛି ? ପଞ୍ଚ ପାଣ୍ଡବଙ୍କୁ ଯେ ଘରେ ପୂରାଇ ନିଆଁ ଲଗାଇ ଦେଇପାରେ, ତା' ପୁଅ କଣ କାହାକୁ ଡରେ ?

ଶକୁନ—ବୁଝିଲ ଯେ, ବାପର ବଡ଼ପଣିଆରେ ପୁଅ ବାହାଦୁରୀ ନେଲେ ଲାଭ କ'ଣ ? ବାପ୍ ସେ ବେଷ୍ଠା ଜ୍ୟାଦା ହେବା ଦରକାର । ଥରେ କାମରେ ଦେଖାଇ ଦେ !

ଗଜର—କି କାମ ? ପରୀକ୍ଷା କର, ଦେଖ ବାପାଠୁ ମୁଁ ବଳୁଛି କି ନାହିଁ ।

ଶକୁନ—ମୁଁ ତ ଠିକ୍ ସେଇକଥା କହୁଥିଲି ।

-ଗୀତ-

ଆରେ "ପାଣ୍ଡବ ଆମର ଶତ୍ରୁ ବନେ ଯାଇଛନ୍ତି
ଗୁପତେ କରିବୁ ଠାବ କାହିଁ ସେ ଅଛନ୍ତି
ଯେଉଁ ବନେ ମୁନିଋଷି କରୁଥାନ୍ତି ତପ
ସେହି ପାଖାପାଖି ଥିବେ ସେ ପଞ୍ଚ ପାଣ୍ଡବ ।
ଋଷିଭକ୍ତ ଅଟନ୍ତି ସେ, ତୁ ଦେଖିଲେ ତାଙ୍କୁ
ଛଦ୍ମଋଷି ବେଶ ଧରି ଭଜିବୁ ହରିଙ୍କୁ ।
ଭକ୍ତିଛଳେ ସେ ପୂଜିବେ, ତୋ ମନ ବାସନା
ପୂରଣ କରିବେ ହେଲେ, ନ କରିବେ ମନା ।
ପଚାରିବେ ତୋତେ ସେ ତ, "କି ଭୋଜନେ ମନ ?"
କହିବୁ, "ମୋ ପାଇଁ ବାବୁ ପକ୍ୱ ଆମ୍ବ ଆଣ ।"

ଗଜର—ଏଁ, ଆଜକାଲି ପୁଣି ଆମ୍ବ ! ଏ କି କଥା ମ ?

ଶକୁନ—ହଁ, ସେଇଠେ ତ ମଜା । ସେମାନେ ଅତିଥିକୁ ଦେବତା ପରି ମନେ କରନ୍ତି । ଜୀବନ ଯିବ ପଛକେ ଅତିଥିର ମନ ଅଭିଳାଷ ନିଶ୍ଚୟ ପୂରଣ କରିବେ । ଯଦି ସେମାନେ ଆମ୍ବ ଦେଇ ପାରିବେ, ତେବେ ଜଣା ପଡ଼ିବ ଯେ ସେଇମାନେ ହିଁ

ପାଣ୍ଡବ । ତାଙ୍କ ବ୍ୟତୀତ ଆଜ କେହି ଅସମ୍ଭବକୁ ସମ୍ଭବ କର ପାରବେ ନାହିଁ ।

ଗଜର—ଆଚ୍ଛା, ମୁଁ ବାହାରଲ; ନିଶ୍ଚୟ ତାଙ୍କର ଠାବ କର ପାରବ । ହେଲେ···

ଶକୁନ—ଆଜ ହେଲେ କ'ଣ ? ମୁଁ ବୁଝୁଛି ତୁ କ'ଣ କହିବାକୁ ଚାହୁଁ । ଯେ କୌରବ କୁଳର ମିତ୍ର, ତାର କଣ କିଛି ଅଭାବ ରହିବ ?

ଗଜର—ହଁ···ସେଇକଥା ତ । ସେତକ ହେଲେ ହେଲା । ଚାଲିଲ । (ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

[ ବନଭୂମି । ପାଣ୍ଡବମାନଙ୍କ ଅନ୍ୱେଷଣରେ ଘୂରି ବୁଲୁଛି ଗୌର ପଣ୍ଡା । ହାତରେ ମୃଗଚର୍ମ, ଦଣ୍ଡ-କମଣ୍ଡଳୁ । ଭସ୍ମବିଲେପିତ ଶରୀର । ଝୁଲି ଭିତରେ କୃତ୍ରିମ ନିଶ, ଦାଢ଼ି ଓ ଜଟା । ଦୂରରୁ କେତେଜଣ ଲୋକଙ୍କୁ ଦେଖି ]

ଗଜର—ଏଁ, ଏଇତ ପାଞ୍ଚଜଣ ଲୋକ ଏକ ସଙ୍ଗରେ ଏଇ ଆଡ଼କୁ ଆସୁଛନ୍ତି । ଏମାନେ ପଞ୍ଚପାଣ୍ଡବ ନୁହନ୍ତି ତ ! ନ ହୋଇଥିଲେ ତ ନାହିଁ । ହୋଇଥିଲେ, ସେମାନଙ୍କୁ ପାଖରେ ପାଇ ପୁଣି ଛାଡ଼ିବ କାହିଁକି ? ଆଚ୍ଛା, ବେଶ ବଦଳାଇ ଦିଏ । ( ଆଖି-ପିଛୁଳାକେ ମୁନି ବେଶରେ ଗଛତଳେ ଧ୍ୟାନରେ ବସିଗଲା । ମଝିରେ ମଝିରେ ଆଖି ଖୋଲି ସେଇଆଡ଼କୁ ଚାହିଁ ପୁଣି ବନ୍ଦ କରିବା ) ଏଇତ, ପାଖେଇ ଗଲେଣି । ସମସ୍ତେ ଏକାପରି

ମାଲୁମ ପଡ଼ୁଛନ୍ତି । ଗୋଟାଏ ତ କଣ ରାକ୍ଷସ ପର, ଏଇଟା ଆଜି ସେଇ ଭୀମ ହୁଣ୍ଡା ନୁହେଁ ତ ? ଗୋଟାଏ ମୁଥରେ ମୋ ମୁନିପଣିଆ ଏକାଥରକେ ବାହାରିଯିବ । ଦେଖାଯାଉ, କ'ଣ ହେଉଛି । ଧ୍ୟାନରେ ବସେ ।

( ଦ୍ରୌପଦୀଙ୍କ ସହିତ ପଞ୍ଚ ପାଣ୍ଡବଙ୍କର ପ୍ରବେଶ )

ଅର୍ଜୁନ—ଆହା, କି ମନୋରମ ବନସ୍ଥଳୀ ! ସ୍ୱର୍ଗୀୟ ସୁଷମାଭରା, ଗଛ, ଲତା, ପତ୍ର ସୁମଣ୍ଡିତ । କୁହୁ କୁହୁ ନାଦରେ ବହିଯାଉଛି ଅଦୂରରେ ଗିରିନିର୍ଝରିଣୀ । ମୁନିମାନଙ୍କର ଓଁକାର ଝଙ୍କାର ସହିତ ଯେପରି ପ୍ରତିଧ୍ୱନିତ ହେଉଛି ସେହି କୁହୁଧ୍ୱନୀ ଭିତରେ ।

ଯୁଧିଷ୍ଠିର—ପ୍ରକୃତରେ ମନୋରମ ଏ ବନଭୂମି । ତେବେ ସର୍ବ-ଶୋଭାର ଆଧାର ଚନ୍ଦ୍ର ଦେହରେ ବି କଳଙ୍କ ଅଛି । ଏ ସୁନ୍ଦରୀ ଆସ୍ଥଳି ବନ ବନ୍ଧ୍ୟା ଅଟେ । ତୁମେ କୌଣସି ବୃକ୍ଷରେ ଗୋଟିଏ ବି ଫଳର ସନ୍ଧାନ ପାଉଛ ?

ଭୀମ—ଅଗ୍ରଜ ! ଏ ବନ ନିଷ୍ଫଳା କାହିଁକି ?

ଯୁଧିଷ୍ଠିର—ବୃଦ୍ଧ କନିଷ୍ଠ ! ତୁମକୁ ତ କିଛି ଅଜଣା ନାହିଁ ।

ସହଦେବ—ଭ୍ରାତଃ ! ରାମଚନ୍ଦ୍ରଙ୍କ ଅଭିଶାପ ଫଳରେ ଏହି ବନ-ପ୍ରକୃତି ସନ୍ତାନବତୀ ନୁହେଁ । ଏହାର କୌଣସି ବୃକ୍ଷରେ ଫଳର ସନ୍ଧାନ ନାହିଁ । (ମୁନିଙ୍କୁ ଦେଖି ଅଟକିଯିବା)

ଛଦ୍ମବେଶୀ ମୁନି—(ଧ୍ୟାନ ସହିତ ଉଚ୍ଚାରଣ କରୁଥାନ୍ତି)

"ନ ତ୍ୱ ମେ ଅସ୍ତୁଦ୍ଧ୍ୟା
ନ ସ୍ୱଧିତବନ ନ୍ୱତି
ଅଥୈତା ବୃର୍ ଭବମି ତେ ।"

(ପାଣ୍ଡବଗଣ ଏକ ସଙ୍ଗତ ମୁନଙ୍କର ପଦଯୁଗଳରେ ପ୍ରଣାମ ବାଢ଼ିଲେ )

ମୁନ—ତୁମର ସକଳ ମନୋବାଞ୍ଛା ପୂର୍ଣ୍ଣ ହେଉ !

ଯୁଧିଷ୍ଠିର—ଦେବ ! ଆପଣ ଅତ୍ୟନ୍ତ କ୍ଳାନ୍ତ ପରି ଜଣାପଡ଼ୁଛନ୍ତି । ବୋଧହୁଏ କ୍ଷୁଧାର୍ତ୍ତ ହେବେଣି, ଦୟାକରି କୁହନ୍ତୁ, କ'ଣ ଭୋଜନ କରିବେ ?

ମୁନ—ଆପଣଙ୍କର ଆତିଥ୍ୟରେ ମୁଁ ଅତ୍ୟନ୍ତ ପ୍ରୀତ । ଭୋଜନର, ଆବଶ୍ୟକତା ଥିଲେ ବି ଆପଣମାନଙ୍କୁ କଷ୍ଟ ଦେବା ମୋର ଇଚ୍ଛା ନୁହେଁ । ମୋର ଭିକ୍ଷାର ସମୟ ହୋଇଗଲାଣି, ମୁଁ ଭିକ୍ଷା ପାଇଁ ବାହାରିଯିବି ।

ଅର୍ଜୁନ—ଦେବ ! ଆମେ ଆପଣଙ୍କୁ ଭିକ୍ଷା ଦାନ କରିବାକୁ କଣ ସୁଯୋଗ ଦେବେନ ? ଭୋଜନ କରିବା ପାଇଁ ଆପଣଙ୍କର କ'ଣ ଇଚ୍ଛା ତାହା କୁହନ୍ତୁ ତପସ୍ୱୀ !

ମୁନ—ମୋର ଆପତ୍ତି ନାହିଁ, ତେବେ ମୁଁ ଯେଉଁ ଦ୍ରବ୍ୟ ଭୋଜନ କଲେ ତୃପ୍ତ ହେବି ତା' କଣ ଆପଣମାନେ ଦେଇପାରିବେ ?

ଯୁଧିଷ୍ଠିର—ପ୍ରାଣ ବିନିମୟରେ ତାର ବ୍ୟବସ୍ଥା କରିବୁ, କୁହନ୍ତୁ ତପସ୍ୱୀ !

ମୁନ—ମୁଁ ଗୋଟିଏ ସୁପକ୍ୱ ଆମ୍ବ ଭୋଜନ କରିବାକୁ ଚାହେଁ । ସେଇଥିରେ ହିଁ ମୋର ଗଭୀର ତୃପ୍ତି ।

ଯୁଧିଷ୍ଠିର—ଆମ୍ର ଫଳ ! ସେ ପୁଣି ପକ୍ୱ ! ଅସମ୍ଭବ ଆପଣଙ୍କର ଭିକ୍ଷା । ହେ ମହର୍ଷି, "ଆଜିର ଏହି ଶରତ ଋତୁରେ ଆମ୍ର ଫଳ ମିଳିବ କୋଉଠୁ ? ଜୀବନ ବିନିମୟରେ ବି ଋତୁଚକ୍ରର

ପରିବର୍ତ୍ତନ ସମ୍ଭବ ନୁହେଁ । ତା ପରେ ଏ ବନ୍ଧ୍ୟା ବନଭୂମିରେ ଫଳ ବା ମିଳିବ କୋଉଠୁ ? ଦୟାକରି ଆପଣ ଅନ୍ୟ ଅଭିଳାଷ ପ୍ରକାଶ କରନ୍ତୁ ।

ମୁନି— —ଗୀତ—

ଅନ୍ୟ କେଉଁଥିରେ ନାହିଁ ଇଚ୍ଛା ମୋର
ହେ କ୍ଷତ୍ରିବର !
ଶୁଣିଛି ଶରତ ଆମ୍ର
ବହୁଛି ଅମୃତ ଦ୍ରବ,
ତାକୁ ପାନ କଲେ ମନ
ହେବ ଶାନ୍ତ ମନୋରମ
ଆଉ କେଉଁଥିରେ ନାହିଁ ଇଚ୍ଛା ମୋର ହେ !
ଯେତେ ଯେ ପଦାର୍ଥ ଭବେ
ମନତୋଷ ନାହିଁ ଲଭେ
ସେ ଅମୃତ ଫଳେ ମୋର
କ୍ଷୁଧା ଉପଶମ କର
ସରବେ ତୋଷିଛି ୱାରବର ହେ !

ଯୁଧିଷ୍ଠିର—ଆପଣ ଶାନ୍ତ ହୁଅନ୍ତୁ ମୁନିବର । ଚେଷ୍ଟା କରେ ।
(ପଞ୍ଚ ପାଣ୍ଡବଙ୍କର ପ୍ରସ୍ଥାନ)

ମୁନି—ହାଃ· ··ହାଃ· ··ହାଃ ! ମନ୍ତ୍ରଟା ଠିକ୍ କାମ କରିଛି । ଏମାନେ ନିଶ୍ଚୟ ପଞ୍ଚ ପାଣ୍ଡବ ହୋଇଥିବେ । କି ସୁନ୍ଦର ଚେହେରା ! ପାଣ୍ଡବ ବ୍ୟତୀତ ଏ ଅସମ୍ଭବ ସର୍ତ୍ତ ପୂରଣ କରିବାକୁ ଆଉ କିଏ କାହିଁକି ଚେଷ୍ଟା କରିବ ? ଦେଖିବା, କୋଉ ପାଣି କୋଉଠିକି ଯାଉଛି ।

## ଚତୁର୍ଥ ଦୃଶ୍ୟ

[ ବନଭୂମି । ପଞ୍ଚୁପାଣ୍ଡବଙ୍କ ସହିତ ଦ୍ରୌପଦୀଙ୍କର ପ୍ରବେଶ ]

ଯୁଧିଷ୍ଠିର—କଣ କରିବା, ବିଷମ ସଙ୍କଟରେ ସମ୍ମୁଖୀନ ଆମେ ହୋଇଛେ ।

ଭୀମ—କି ଅସମ୍ଭବ କଥା, ଋଷିଙ୍କ ପାଇଁ ତ ଆମେ ଆମ୍ରଟାଏ ଗଢ଼ିଦେଇ ପାରିବାନି ! ଏ ପ୍ରକାର ଅସାଧ୍ୟ ଇଚ୍ଛା ଯେଉଁ ଋଷିଙ୍କର ସେ ଭିକ୍ଷା ପାଇବା ପାଇଁ ହକ୍‌ଦାର ନୁହନ୍ତି ।

ଯୁଧିଷ୍ଠିର—ନା···ନା···ତା' ନୁହେଁ । ସେ ଅସନ୍ତୁଷ୍ଟ ହୋଇ ଅଭିଶାପ ଦେଲେ ଆମକୁ ଦାରୁଣ ଦୁଃଖ ଭୋଗ କରିବାକୁ ପଡ଼ିବ । ଭୋକିଲା ଋଷିର ଶାପ କେତେ ଉତ୍କଟ, ଜାଣିନ୍ତ ?

ସହଦେବ—ଏଇ ତ ପାଣ୍ଡବଙ୍କ ସାଧନାର ପରୀକ୍ଷା ।

ନକୁଳ—ଯାହା ସମ୍ପୂର୍ଣ୍ଣ ଅସମ୍ଭବ ତା' ପାଇଁ ସାଧନାର ପ୍ରଶ୍ନ କେଉଁଠି ରହିଲା ?

ଅର୍ଜୁନ—ଅସମ୍ଭବ ସମ୍ଭବ ହେବ । ଚାଲ, ସମସ୍ତେ ମିଶି ସେହି ଭ୍ରତାପହାରୀ ମଧୁସୂଦନଙ୍କୁ ସ୍ମରଣ କରିବା । ସେ ନିଶ୍ଚୟ ଏ ସଙ୍କଟରୁ ଆମକୁ ତ୍ରାଣ କରିବେ । ଏହା ବ୍ୟତୀତ ଆମ ପାଖରେ ଅନ୍ୟ କୌଣସି ପନ୍ଥା ନାହିଁ ।

ଯୁଧିଷ୍ଠିର—ଠିକ୍ କହିଲ ଧନଞ୍ଜୟ, ପ୍ରକୃତରେ ସେହି ପରମ ସଖାଙ୍କ ବ୍ୟତୀତ ଏ ବିପଦରୁ ମୁକ୍ତ ହେବାପାଇଁ ଆମର ଅନ୍ୟ କୌଣସି ଉପାୟ ନାହିଁ । ( ସମସ୍ତେ ଏକପହିତ ଧ୍ୟାନମଗ୍ନ )

ଅର୍ଜୁନ—( ମୁଦ୍ରିତ ଚକ୍ଷୁ ଖୋଲି ଅତି ଆର୍ତ୍ତ-ଆନନ୍ଦିତ କଣ୍ଠରେ )
ଏଇ, ଏଇ ତ ସେଇ ଜ୍ୟୋତିର୍ମୟ, ପାପତାପହାରୀ ପରମ କାରୁଣିକ ପରମ ସଖା ଆସିଗଲେଣି । ( ସମସ୍ତେ ଉତ୍ସୁକଭରା ନୟନରେ ସେହିଆଡ଼କୁ ଚାହିଁବା)

ଯୁଧିଷ୍ଠିର—ଆସ...ଆସ ସଖା ! ତୁମ କରୁଣାର କୈବଲ୍ୟ-କଣିକା ପାଇଁ ଆମେ ସମସ୍ତେ ବ୍ୟାକୁଳିତ ହୋଇ ଅପେକ୍ଷା କରୁଛୁ ।

କୃଷ୍ଣ—(ଉପସ୍ଥିତ ହୋଇ)

ସର୍ବଜ୍ଞ ବିଜେ ଧର୍ମରାଜ ଯୁଧିଷ୍ଠିର
କି ବିପଦ ଚିନ୍ତି କୁହ ଧନଞ୍ଜୟ ବୀର ।
ଭୀମ ସର୍ବ, ସୁଧୀ ସହଦେବ ପରାକ୍ରମୀ
କି ଦୁଃଖ ଚିନ୍ତି ନକୁଳ ଦ୍ରୌପଦୀ ପୁଣି ?
ନ୍ୟାୟ ଧର୍ମ ସତ୍ୟର ଯେ ଶାଶ୍ୱତ ପୂଜକ
କାହାର କୁଚକ୍ର ପାଇଁ କମ୍ପା ଏତେ ଦକ ?

ଯୁଧିଷ୍ଠିର—

ଉପଗତ ହେଲ ହେ ଯଦୁପତି,
ବିଷମ ପରୀକ୍ଷା ପଡ଼ି ଅଛି ।
କ୍ଷୁଧାରେ ଆତୁର ଋଷି ବସିଛନ୍ତି ବେଢ଼େ,
ଭକ୍ଷଣ କରିବେ ପକ୍ୱ ଆମ୍ର ଫଳ ତୋଡ଼େ ।
ବନ୍ଧ୍ୟା ଏ ଆସ୍ତିକ ବଣ ଫଳମୂଳହୀନ
ଏ ଶରତ କାଳେ କାହିଁ ମିଳିବ ତା' ପୁଣ ?
ଚିନ୍ତାରେ ଅସ୍ଥିର ଆମ ମତି
ଅଭିଶାପ ଦେବେ ସଦ୍ୟ ଯତି ।

କୃଷ୍ଣ—ଚିନ୍ତାର କିଛି କାରଣ ନାହିଁ ଧର୍ମରାଜ ! ମୁଁ ତାର ବ୍ୟବସ୍ଥା କରି ସାରିଛି । ଧ୍ୟାନରେ ସବୁକଥା ଜାଣି ବ୍ୟାସଦେବଙ୍କୁ ଖବର ଦେଇଛି, ସେ ଆମ୍ବଟାକୁଆ ଗୋଟିଏ ସଙ୍ଗରେ ନେଇ ଏଠାରେ ବର୍ତ୍ତମାନ ପହଞ୍ଚିବେ ।

ଅର୍ଜୁନ—ସଖା, ଟାକୁଆ କଣ ହେବ ? ପାଚିଲା ଆମ୍ବ ପରା ଦରକାର ।

ଭୀମ—(ହସି ହସି) ଋଷିଙ୍କୁ ଆମ୍ବ ନାମରେ ଟାକୁଆ ଭଣ୍ଡେଇ ଦେଲେ କ'ଣ ଚଳିବନି ?

ସହଦେବ—ବ୍ୟସ୍ତ ହେବାର କିଛି ନାହିଁ । ଟାକୁଆ ଯଦି ସଖାଙ୍କ ମହିମାରୁ ପାଚିଲା ଆମ୍ବର କାମ ଦେଇ ପାରିବ, ସେଥିରେ ଆଉ ବ୍ୟସ୍ତ ହେବାର କ'ଣ ଅଛି ? ଅପେକ୍ଷା କରନ୍ତୁ ।

କୃଷ୍ଣ—ପାଣ୍ଡବ ବୀର, ଏଇ ତ ବ୍ୟାସଦେବ ଆସି ପହଞ୍ଚିଗଲେଣି । କଣ ମିଳିଲା ?

ବ୍ୟାସଦେବ—(ପ୍ରବେଶ କରି) ହଁ, ମିଳିଲା । ଈଶ୍ୱରଙ୍କର ଇଚ୍ଛା କ'ଣ କେବେ ଅପୂରଣ ରହେ ? ଏଇ ନିଅନ୍ତୁ ଆପଣଙ୍କର ଇଚ୍ଛା-ଆମ୍ବ ।

କୃଷ୍ଣ—(ଟାକୁଆଟିକୁ ନେଇ ଯୁଧିଷ୍ଠିରଙ୍କ ହାତକୁ ବଢ଼ାଇଦେଲେ) ଦେଖିଲେ, ଟାକୁଆଟି ପ୍ରକୃତରେ ଗୋଟିଏ ଭଲ ଆମ୍ବର ଟାକୁଆ ପରି ଜଣା ପଡ଼ୁଛି ।

ଯୁଧିଷ୍ଠିର—ବାସ୍ତବିକ୍ କି ଚମତ୍କାର ଏ ଆମ୍ବଟି ହୋଇ ନ ଥିବ ! ଟାକୁଆରୁ ମଧ୍ୟ ସୁମଧୁର ଗନ୍ଧ ବହୁଛି । ବ୍ୟାସଦେବ ଏହାକୁ ପାଇଲେ କୋଉଠୁ ?

ବ୍ୟାସଦେବ—ସ୍ୱର୍ଗର ନନ୍ଦନ ବନରୁ ଏ ମହାକାଳ ଫଳସାଉଟିକୁ ପାଇଛୁ । ଏହାର ଶକ୍ତି ଅନୁପମ । ମର୍ତ୍ତ୍ୟମାଟିରେ ଏହା ଅଲୌକିକ ଘଟଣା ସୃଷ୍ଟି କରିପାରିବ ।

—ମଂଚ ଅନ୍ଧକାର—

**ପଞ୍ଚମ ଦୃଶ୍ୟ**

[ ପାଣ୍ଡବମାନଙ୍କ ଗହଣରେ ଶ୍ରୀକୃଷ୍ଣ ]

ଶ୍ରୀକୃଷ୍ଣ—ଦେଖ, ମୁଁ ଏହି ଟାକୁଆଟିକୁ ମାଟିରେ ପୋତୁଛି । ଏହା ସତ୍ୟଆମ୍ବ । ତୁମେ ତାକୁ ଘୁଣ୍ଟି ତମ ମନର ସବୁ ଗୁପ୍ତ କଥା କହିଗଲେ, ଆଖିପିଛୁଳାକେ ସେହି ଟାକୁଆ ଗଜାରୁ ଗଛ ହୋଇ ଫଳ ଫଳିବ । ସେ ଫଳ ମଧ୍ୟ ସଙ୍ଗେ ସଙ୍ଗେ ପାରିବ ଓ ତୁମେ ତାହାକୁ ନେଇ ମୁନିଙ୍କ ହାତରେ ଅକ୍ଲେଶରେ ଦେଇପାରିବ । ମନେରଖ, ଟିକିଏ ବି ମିଛ କହିଲେ ଗଛର ବଢ଼ିବା ସେଇଠାରେ ରହିଯିବ । ଯାହା କହିବ ସବୁ ସତ, ସବୁ ଖୋଲା; ପାରିବ ?

ସମସ୍ତେ—[ଏକସହିତ କହିଲେ] ନିଶ୍ଚୟ ପାରିବୁ ।

ଯୁଧିଷ୍ଠିର ନିଜର ଜୀବନ ବୃତ୍ତାନ୍ତ ଆରମ୍ଭ କଲେ ।

—ଗୀତ—

ସତ୍ୟ ଆମ୍ବ, ସତ୍ୟ ତୁମେ ସତ୍ୟ ଯଦି ପ୍ରଭୁ,
ସତ୍ୟ ଧର୍ମ ଜୟ ହେଉ, କହେ ସତ୍ୟ ସବୁ ।
କହିନାହିଁ ଜୀବନେ ମୁଁ କେବେ ମିଥ୍ୟା କଥା,
ସ୍ୱାର୍ଥ ପାଇଁ କାହାମନେ ଦେଇ ନାହିଁ ବ୍ୟଥା ।

କରିଅଛୁ ରାଗ ଦ୍ୱେଷ ହିଂସା ଲୋଭ ଜୟ,
ତବ ପଦେ ପ୍ରଭୁ ମୋର ଶରଣନ ଲୟ ।

ରାଜ୍ୟ ପାଇଁ ହେ, ରାଜ୍ୟ ପାଇଁ,
ଦରକାର ହେଲେ ଯୁଦ୍ଧ କରିବ ମୁଁ ସାଇଁ ।
(ଆମ୍ବ ଟାକୁଆ ଏଥର ଆଖି ପିଚୁଳାକେ ଗଜା ହେଲା ।)

ଭୀମ— —ଗୀତ—

ମୁଁ ତ ଭୀମ ଭୟଙ୍କର ଭୀମ ହୋ
ମୁଁ ତ ଭୀମ,
ମୋର ଗଦାକୁ ଡରଇ ଯମ ହୋ, ମୁଁ ତ ଭୀମ ।

ଏ ବିଶ୍ୱ ଭୁବନେ ଯୁଧିଷ୍ଠିର ନିନ୍ଦା
ସହି ନ ପାରଇ କେବେ,
ବିଳାସ ବିଭବ ଆହାର ମୈଥୁନ
ଶୟନେ ମୋ ସୁଖ ଭବେ ।

ଶପଥ ଅଟଳ ନିଧନ କରିବ
ପାପୀ କଉରବ କୁଳ,
ଆହେ ଅନ୍ତର୍ଯ୍ୟାମୀ ତମକୁ ମୁଁ ରାଗେ
ସେପରି ପଡ଼ିଲେ ବେଳ ।
ରାଗେ ହୁଏ ତମ ତମ ହୋ
ମୋର ଗଦାକୁ ଡରଇ ଯମ ହୋ··· ।।

(ଆମ୍ବଗଛ ବୃକ୍ଷରେ ପରିଣତ ହେଲା)

ଅର୍ଜୁନ— ମୁଁ ଅଟେ ଅର୍ଜୁନ ବୀର ନ ଥାଏ ମୋ ଦକା,
ତ୍ରିଭୁବନ ଜିଣିପାରେ ଥିଲେ ପାଶେ ସଖା ।

ଥିଲେ ପାଣେ ପାଶୁପତ, ଗାଣ୍ଡିବ ମୋ କରେ,
ଅନ୍ୟାୟ ଆଟୋପ କା'ର ଭ୍ରୂକ୍ଷେପ ନ କରେ ।

ମୋ ପ୍ରକୃତ ଧୀରସ୍ଥିର ପ୍ରଶାନ୍ତ ଉଦାର,
ଅଧର୍ମେ ପ୍ରଳୟ ମୁଁ ତ ଆଗ୍ନେୟ ଉଦ୍‌ଗାର ।

କାମିନୀ କାଞ୍ଚନ ଲୋଭ ନ ଥାଏ ମୋ ମନେ,
ନ ପାରଇ ସନ୍ତ୍ର କୃଷ୍ଣ ନନ୍ଦା ମୋ ଜୀବନେ ।

ଶତ୍ରୁ ହେଲେ ବ ନର୍ଦ୍ଦୋଷେ ଦେଇପାରେ କ୍ଷମା,
ଶରଣ ରକ୍ଷଣେ ସ୍ପୃହି ନଥାଏ ବଡ଼ିମା ।

(ବର୍ତ୍ତମାନ ଆମ୍ବଗଛରେ ବଉଳ ହେଲା)

ନକୁଳ— —ଗୀତ—

ଶୁଣ ଶୁଣ ହେ, କ୍ଷତ୍ରୀବର
ନକୁଳ ନାମ ଅଟେ ମୋର ।

ମୁଁ ମହା ପରାକ୍ରମୀ
ତ୍ରିଭୁବନ ମେଦିନୀ
କୁନ୍ତ ମୋ ଥିଲେ ହାତେ
ପାରଇ ସବୁ ଜିଣି

ଚନ୍ଦନେ ଚର୍ଚ୍ଚିତ ଶରୀର,
ଭୋଗ ବିଳାସେ ମନ
ଲୋପନ୍ତ ଚକ୍ଷୁଃସମ
ସେଇ ମୋ ସୁଖର ସମ୍ଭାର ହେ ।

(ଏଥର ଆମ୍ବ ବଉଳ ଝାଡ଼ି ପାଞ୍ଚୋଟି ଆମ୍ବକଷି ହେଲା)

ସହଦେବ— —ଗୀତ—

ନୁହଁ ଦେବ ଦେବ ମହାଦେବ ମୁଁ
ସହଦେବ ମୁଁ ହୋ ସହଦେବ,
ହଦା ମୂରୁଖ ମୁଁ ମୋ ପର ଆଉ କେ
ତିନକାଳ କଥା କହିଦେବା ହୋ ।

ମୋ ହାତରେ ଅଛୁ ଗୁଣନିଧି
ଗ୍ରହ ଆଦିଅନ୍ତ ଗତିବିଧି
ଭଲମନ୍ଦ କଥା ସବୁ ଜଣା
ମିଛ ପାଇଁ ନୁହେଁ ପଥ ବଣା
କାହାକୁ ନ ଡ଼ଏ ପରାଭବ ହୋ
ସହଦେବ ମୁଁ ତ ସହଦେବ ହୋ ।।

(ସହଦେବଙ୍କ କଥା ଶୁଣି ଆମ୍ବ ହଳଦି ବର୍ଣ୍ଣ ଧାରଣ କଲା)

ଶ୍ରୀକୃଷ୍ଣ—ହଁ ପାଞ୍ଚାଳ ! ଏଥର ତୁମର ପାଳି । ଅକାଳରେ ଆମ୍ବ ଫଳ ପାଚିବାକୁ ରହିଲା । ଏଣିକ ତୁମ କଥା ଉପରେ ପାଚିବା ନ ପାଚିବା ନିର୍ଭର କରେ । ଧରିନେବାକୁ ପଡ଼ିବ ଏହା ଏକ ସତ୍ୟଯଜ୍ଞ ଓ ଏ ଆମ୍ବ ତାର ନିଷ୍ଠା ନିପୂମର ଫଳ । ମୁଁ ଜାଣେ, ତୁମେ ସତୀ ଓ ମହାନ୍ ଶକ୍ତିର ଆଧାର । ତୁମେ ସତ୍ୟର ଅବତାର । ନାରୀ ହିସାବରେ ତୁମର କିଛି ଦୁର୍ବଳତା ଓ ନିଭୃତ ଇଚ୍ଛା ଥିଲେ ସତ୍ୟାସତ୍ୟ ପ୍ରକାଶ କରି ଏ ସତ୍ୟ-ଯଜ୍ଞରେ ପୂର୍ଣ୍ଣାହୁତି ଦିଅ ।

ଦ୍ରୌପଦୀ—ହେ ଅନ୍ତର୍ଯାମୀ, ସମସ୍ତଙ୍କର ଅନ୍ତରର କଥା ଆପଣଙ୍କୁ ଜଣା । ମୁଁ ଗୋପନ କଲେ ବି ଆପଣଙ୍କୁ ତାହା କଣ ଅଛପା ରହିବ ?

—ଗୀତ—

ଆହେ ଅନ୍ତର୍ଯ୍ୟାମୀ କା' ଅନ୍ତର କଥା
ଅଜଣା ତୁମକୁ ପ୍ରଭୁ,
ହେ ମଧୁସୂଦନ, ଭକ୍ତ-ବିମୋହନ
ଚଳଇ ଇଙ୍ଗିତେ ସବୁ ।

ସହଜେ ମୁଁ ନାରୀ ବାର ମୋ ପ୍ରକୃତ
ସୁନ୍ଦର ପୁରୁଷେ ଭଲେ,
ସେ ଶୂର ସୁନ୍ଦର ବୀର ଧନଞ୍ଜୟ
ପାଇଁ ମୋ ମମତା ବଳେ ।

ବାସନା-ବିକଳ ଚଞ୍ଚଳ ମୋ ମନ
ରୂପ-ପାଗଳମୀ ନାରୀ ।

ସେ ସୁନ୍ଦରତମ ମହାବୀର୍ଯ୍ୟ କର୍ଣ୍ଣ
ମୋ ହୃଦୟ ଟାଣ୍ଡ ଜାଣି
ଅଟଳ ପ୍ରତିଜ୍ଞା, ଦୁଃଶାସନ ରକ୍ତେ
ବାନ୍ଧିବ ମୁକୁଳା ବେଣୀ ।

କହିଲି ହରି ହେ ଗୋପନ କଥା ମୋ
ମନରେ ନ ରଖି ଭୟ,
ସତ୍ୟ ଏ ସଂସାର, ସତ୍ୟ ଚରାଚର
ସତ୍ୟର ହେଉ ଜୟ ।

(କଥା ସରିଲାକ୍ଷଣି ଆମ୍ବ ଟି ପାଚି ଲାଲ ଟହଟହ ଦେଖାଗଲା ଓ ସମସ୍ତେ ଖୁସି ହୋଇଗଲେ)

ଯୁଧିଷ୍ଠିର—ସତ୍ୟର ଜୟ···ସତ୍ୟର ଜୟ !

ଅନ୍ୟମାନେ—ସତ୍ୟର ଜୟ···ସତ୍ୟର ଜୟ !

ଶ୍ରୀକୃଷ୍ଣ—ସତ୍ୟଯଜ୍ଞର ପୂର୍ଣ୍ଣାହୁତି ପଡ଼ିଛି । ଏ ସତ୍ୟମୟ ସୃଷ୍ଟିରେ କିଛି ଅସମ୍ଭବ ନୁହେଁ । ସତ୍ୟ ହିଁ ଈଶ୍ୱର । (ଏହା କହି ଶ୍ରୀକୃଷ୍ଣ ଆମ୍ବଗୁଡ଼ିକ ତୋଳି ଆଣିଲେ) ଏଇ ନିଅନ୍ତୁ, ଏ ଆମ୍ବଟି ତପସ୍ୱୀଙ୍କୁ ଦେବେ, ଦ୍ୱିତୀୟ ଆମ୍ବଟି ଇନ୍ଦ୍ରଙ୍କ ପାଇଁ, ତୃତୀୟଟି ସମସ୍ତ ମୁନିମାନଙ୍କ ପାଇଁ, ଚତୁର୍ଥଟି ତୁମମାନଙ୍କର ଓ ପଞ୍ଚମଟି ମୋର । ଏଇ ନିଅ । —ମଂଚ ଅନ୍ଧକାର—

## ଷଷ୍ଠ ଦୃଶ୍ୟ

[ ସେଇ ଆସନ୍ନ ବନଭୂମିରେ ଏକ ବୃକ୍ଷ ତଳେ କପଟୀ ସନ୍ନ୍ୟାସୀ ଧ୍ୟାନମଗ୍ନ । ଯୁଧିଷ୍ଠିର ପକ୍ୱ ଆମ୍ର ସହ ଆସି ଆନନ୍ଦ ମନରେ ସେଠାରେ ପହଞ୍ଚିଲେ ]

ଯୁଧିଷ୍ଠିର—ହେ ଋଷିଶ୍ରେଷ୍ଠ, ବିଳମ୍ବ ପାଇଁ ମୋତେ କ୍ଷମା ଦିଅନ୍ତୁ । ଆପଣଙ୍କ କ୍ଷୁଧା ଉପଶମ କରିବା ପାଇଁ ବିଳମ୍ବ ହେଲା । ଏ ବିଳମ୍ବ ବିଧିନିର୍ଦ୍ଦିଷ୍ଟ । ବୋଧହୁଏ ଆପଣଙ୍କ ସନ୍ତୋଷ ପାଇଁ ଏ ଅସମୟରେ ମଧ୍ୟ ମୁଁ ଗୋଟିଏ ପକ୍ୱ ଆମ୍ବ ଯୋଗାଡ଼ କରି ପାରିଲି । ଏହାକୁ ଆନନ୍ଦରେ ଗ୍ରହଣ କରି ଆମର ବ୍ୟାକୁଳତା ଦୂର କରନ୍ତୁ ।

ତପସ୍ୱୀ—(ଚକ୍ଷୁ ଉନ୍ମୀଳନ କରି) ମୁଁ ଜାଣେ, ପାଣ୍ଡବ ପୁତ୍ର ବ୍ୟତୀତ ଏ ପ୍ରକାର ଅସମ୍ଭବକୁ କେହି ସମ୍ଭବ କରି ପାରିବେ ନାହିଁ । ତପସ୍ୱୀର ମନୋବାଞ୍ଛା ପୂର୍ଣ୍ଣ କରି ଆପଣ ବହୁ ତପସ୍ୟାର ଫଳଲାଭ କରିଛନ୍ତି । ଅସହ୍ୟ କ୍ଷୁଧା ଯନ୍ତ୍ରଣା ସତ୍ତ୍ୱେ ମୁଁ ଏହି ପକ୍ୱ ଆମ୍ର ଫଳ ଲାଭ କରି ପରମ ପରିତୃପ୍ତ ।

ଯୁଧିଷ୍ଠିର—ଈଶ୍ୱରଙ୍କର ଅସୀମ କୃପା । ତାଙ୍କର କରୁଣାରୁ ଏହା ସମ୍ଭବ ହେଲା···ଏଇ ଗ୍ରହଣ କରନ୍ତୁ !

ତପସ୍ୱୀ—[ହସ୍ତ ପ୍ରସାରଣ କରି ଗ୍ରହଣ କରିବା] ବାଃ···ଚମତ୍କାର ! କି ମଧୁର ଏହାର ଗନ୍ଧ ! ନିଶ୍ଚୟ ସୁସ୍ୱାଦୁ ହୋଇଥିବ ! ଆପଣ ଏଥର ଯାଆନ୍ତୁ । ଯଜ୍ଞ ଶେଷରେ ମୁଁ ଭୋଜନ କରିବି ।

ଯୁଧିଷ୍ଠିର—ଆପଣ ମୋ ସମ୍ମୁଖରେ ତୃପ୍ତି ସହିତ ଭୋଜନ କଲେ ମୁଁ ଗଭୀର ଆନନ୍ଦ ଲାଭ କରନ୍ତି । ଆହାର କରନ୍ତୁ ତପସ୍ୱୀ !

ତପସ୍ୱୀ—ନା ନା···ମୁଁ କାହାର ଉପସ୍ଥିତିରେ କିଛି ଭକ୍ଷଣ କରେ ନାହିଁ । ଆପଣଙ୍କର ଅତିଥିପରାୟଣତା ପାଇଁ ମୁଁ ଅତ୍ୟନ୍ତ ଆନନ୍ଦିତ ।

ଯୁଧିଷ୍ଠିର—(ଦୀର୍ଘନିଶ୍ୱାସ ପକାଇ) ଆଚ୍ଛା ଯାଉଛି । ତପସ୍ୱୀଙ୍କର ଇଚ୍ଛା ପୂର୍ଣ୍ଣ ହେଉ । (ପ୍ରସ୍ଥାନ)

ତପସ୍ୱୀ—(ଯୁଧିଷ୍ଠିରଙ୍କ ଗନ୍ତପଥକୁ ଚାହିଁ କିଛି ସମୟ ପରେ ଏକ ବିକଟାଳ ହସ ହସିବା)

ହାଃ···ହାଃ···ହାଃ । ଖାଲି ଧର୍ମ କଲେ ଚଳିବନି ବେଟା । ସଂସାରଟା ବିଲକୁଲ ଧର୍ମରେ ଚଳୁନି । ଟିକିଏ ଅଧର୍ମ ଦରକାର···ଅନୀତି ଦରକାର । ଏତେ ଧର୍ମ କରି କି ଲାଭ ମିଳିଲା ? ଏଥର ପାଣ୍ଡବମାନଙ୍କର ଠିକ୍ ସଂଧାନ ମିଳିଗଲା । ଯାଏ, ଏ ଆମ୍ବଟି ମୋର ଭାଗ୍ୟ ଖୋଲିଦେବ । ଦୁର୍ଯ୍ୟୋଧନ ଏ ଆମ୍ବଟି ଦେଖିଲେ ନିଶ୍ଚୟ ବିଶ୍ୱାସ କରିବେ ଯେ ମୁଁ ପାଣ୍ଡବମାନଙ୍କର ଠାବ କରିଛି । ଆମ୍ବଟାକୁ ଖାଇଦେବାକୁ ଭାରି ଲୋଭ ହେଉଛି, କିନ୍ତୁ କରିବି କଣ ?

—ମଂଚ ଅନ୍ଧକାର—

## ସପ୍ତମ ଦୃଶ୍ୟ

[ ଜଙ୍ଗଲ ରାସ୍ତା, ଗଉର ପଣ୍ଡା ତାର ସନ୍ନ୍ୟାସୀ ବେଶକୁ ଉଭାରି ଦେଇ ଆମ୍ବଟି ଧରି ଲୁଚି ଲୁଚି ଯାଉଛି । ଗତିରେ ଭୟର ଚିହ୍ନ । ଏଣେ ତେଣେ ଥରକୁ ଥର ଗ୍ରହୁଁଛି ଓ ଏକନିଶ୍ୱାସରେ ଦଉଡ଼ୁଛି । ବିପରୀତ ଦିଗରୁ ଆସି ପହଞ୍ଚିଲେ ଶ୍ରୀକୃଷ୍ଣ ]

ଶ୍ରୀକୃଷ୍ଣ—କ ରେ, ତୁ କିଏ ? କୁଆଡ଼େ ଯାଉଚୁ ?

ଗଉର ପଣ୍ଡା—(ଚମକପଡ଼ି) ମୁଁ···ଏ ମୁଁ ହେ···ଉ···ଚ୍ଛି—ହଁ, ବାବୁ ତମେ କିଏ ? ଜଣେ ଦେବଦୂତ ପରି ତ ଆପଣ ଜଣାପଡ଼ୁଛନ୍ତି; ଆଜ୍ଞା, ମୋର ପ୍ରଣାମ ନିଅନ୍ତୁ ।

ଶ୍ରୀକୃଷ୍ଣ—ଆଗ କହ ତୁ କିଏ । ପରେ ବୁଝିବୁ ମୁଁ ଦେବଦୂତ ନା ରାକ୍ଷସ ।

ଗଉର ପଣ୍ଡା—(ଆମ୍ବଟିକୁ ଲୁଚାଇ ଧରି) ମୁନି ଋଷିମାନେ କଣ ଇମିତି ରାଗନ୍ତି ? ଆମେ ପଥିକ ଲୋକ; ତମ ବାଟରେ ତମେ ଯାଅ, ଆମ ବାଟରେ ଆମେ ଯିବୁ । ପରିଚୟ କଣ ଦରକାର ?

ଶ୍ରୀକୃଷ୍ଣ—ପରିଚୟ ନ ଦେଇ ପାଦେ ବି ଆଗେଇ ପାରିବୁନି, ଭଲରେ କହୁଛି ।

ଗଉର ପଣ୍ଡା—ନହେଲେ କଣ ବାଡ଼େଇବ ? ତମେ ତ ଆଜ୍ଞା ଦେବଦୂତ ! ବେଶ ବଦଳେଇ ବଣ ଜଙ୍ଗଲରେ ଘୂରି ବୁଲୁଚ, ନିରୀହ ବାଟୋଇମାନଙ୍କୁ ଦେଖିଲେ ଜୁଲମ କରୁଚ ।

ଶ୍ରୀକୃଷ୍ଣ—ତମେ ଯିମିତ ଋଷି ବେଶ ଧରି ପାଣ୍ଡବଙ୍କ ପରି ସରଳ ବାଟୋଇଙ୍କୁ ଠକୁଛ !

ଗଜର ପଣ୍ଡା—(ପାଟି ଖନବାଜପିବା) ମୁଁ···ମୁଁ ? ଏଁ, କ'ଣ କହିଲ ? କ ଓ ବୋଉ ପାଣ୍ଡବ, ତୁମେ କାହା କଥା କାହା ପାଖରେ କହୁଛ । ଲୋକ କଣ ଚିହ୍ନି ପାରୁନ ?

ଶ୍ରୀକୃଷ୍ଣ—ଠିକ୍ ଚିହ୍ନୁଛି । ହାତରେ ଯୋଉ ଆମ୍ବଟି ଲୁଚ୍ଛଉଛ ସେଇଟି ଯୋଉ ପାଣ୍ଡବଙ୍କଠୁ ପାଇଥିଲ, ସେଇ ପାଣ୍ଡବ ।

ଗଜର ପଣ୍ଡା—( ଆଉରି ସଂଯତ ହୋଇ ଓ ପୁଣି ଠିକ୍‌ଭାବରେ ଲୁଚେଇ ) କ ଓ ବୋଉ ଆମ୍ବ !

ଶ୍ରୀକୃଷ୍ଣ—ଦେଖୁନ, ଲୁଚେଇକରି କ'ଣ ଧରିଛ ?

ଗଜର ପଣ୍ଡା—[ସନ୍ଦେହ ଦୃଷ୍ଟିରେ] ସେଇଟା ଗୋଟାଏ ଫଳ, ଜଙ୍ଗଲରେ ବୁଲୁଥିଲି ତ, ପାଇଛି ।

ଶ୍ରୀକୃଷ୍ଣ—କ ଫଳ, ତମେ କ'ଣ ଜାଣନା ?

ଗଜର ପଣ୍ଡା—ହଁ, ଆମ୍ବ ପରି ବାସୁଚି ।

ଶ୍ରୀକୃଷ୍ଣ—ଦେଲ ଦେଲ, ଦେଖିବା । ସେଇଟା ଆମ୍ବ ନା ଆମ୍ବଡ଼ା— ତୁମେ ଚିହ୍ନି ପାରୁନ, ମୁଁ ଠିକ୍ ଚିହ୍ନି ଦେବି ।

ଗଜର ପଣ୍ଡା—ହଁ, ସେଇ ଆମ୍ବ···ଆମ୍ବ । ସେଇଟା ମୋ ବାପାଙ୍କ ପାଇଁ ନେଉଛି । ସେ ହରି ଭଲ ପାଆନ୍ତି, ପୁଣି ଅଦିନଆ ଆମ୍ବ !

ଶ୍ରୀକୃଷ୍ଣ—ଜାଣିଛ କି, ଖୋଜୁଥିଲି କାହିଁକି ? ହଁ, ଶୁଣେ ତମର ସେ ବାପାଟି କିଏ ?

ଗଉର ପଣ୍ଡା—ଓହୋ, ତମେ ସେଥିରୁ କ'ଣ ପାଇବ ? ବାବୁ ତମେ ତମ ବାଟରେ ଯାଅ, ମୁଁ ମୋ ବାଟରେ ଯାଉଛି । [କହ୍ନସାର ଉଦ୍ୟତ ହେବା]

ଶ୍ରୀକୃଷ୍ଣ—[ତା ହାତରୁ ଆମ୍ବଟିକୁ ଛଡ଼ାଇ ଆଣି] ଏଥର ଯାଇପାର । ତମ ବାପାଙ୍କୁ କହିବ ଆମ୍ବ ପାଇଥିଲ, କିନ୍ତୁ ଆଉଜଣେ ବାଟରେ ଝୁଣ୍ଟି ଦେଲା ।

ଗଉର ପଣ୍ଡା···ଏଁ, ତମେ ତା ହେଲେ·····ଏଁ [ ଶ୍ରୀକୃଷ୍ଣଙ୍କ ଯିବା ବାଟକୁ ଚାହିଁରହିଲା ]

ଶ୍ରୀକୃଷ୍ଣ—ହିଁ·····ମୁଁ ତା ହେଲେ·····ଏଁ ! !

—ମଂଚ ଅନ୍ଧକାର—